# ମୋ ସଂଗ୍ରାମୀ ଜୀବନ

ଲେଖକ :

**ଶ୍ରୀ ନାରାୟଣ ବେହେରା**
ଗୋପପୁର, ବାହ୍ମାଡ଼ାଝୋଲା, ନୟାଗଡ଼

ସଂକଳନ :

**ଶ୍ରୀ ବିଦ୍ୟାଧର ବାରିକ**
**ଶ୍ରୀ ପ୍ରଫୁଲ୍ଲ କୁମାର ଦାସ**
ଭାଗବତ ବେହେରା ସ୍ମୃତି ସଂସଦ, ଭୁବନେଶ୍ୱର

ପ୍ରକାଶକ :

**ଶ୍ରୀ ସରୋଜ କୁମାର ବେହେରା**
ଧର୍ମବିହାର, ଖଣ୍ଡଗିରି, ଭୁବନେଶ୍ୱର
ମୋବାଇଲ୍ : ୯୪୩୭୦୨୩୮୩୯

ପ୍ରଥମ ସଂସ୍କରଣ—୨୦୦୯

ଅକ୍ଷର ବିନ୍ୟାସ :

**ବି.ଏନ୍. ଗ୍ରାଫିକ୍ସ**
ନୟାପଲ୍ଲୀ, ଭୁବନେଶ୍ୱର-୧୫

# ନୟାଗଡ଼ର ଲୌହ ମାନବ ନାରଣ ଭାଇ

୧୯୭୮ ମସିହା କଥା, ହଜିଲା ଦିନର ଏକ ଦୃଶ୍ୟ, ସେ ଥିଲା ଏକ ଶୀତ ସାକଳ, ସୂର୍ଯ୍ୟ ନୂତନ ସଂଦେଶ ନେଇ ଉଦ୍‌ଭାସିତ ହେଉଥିଲେ । ମାଘ ମାସ ଶୀତ, ଦୁଇଦିନ ଆଗରୁ ଭଲ ବର୍ଷା ହୋଇଥିଲା । କୁହୁଡ଼ି ଲାଗି ରହିଥାଏ । ସାପୁଆ ମୁଣ୍ଡିଆ ଠାରୁ ଶୁଳିଆ ମୁଣ୍ଡିଆ ପର୍ଯ୍ୟନ୍ତ ଘନ କୁହୁଡ଼ି ଘେରା । ସାଇକେଲ୍‌ରେ ମୁଁ ଆଉ ମୋ ବାପା ଯାଉଥିଲୁ ଯିବୁ ମାଣିକ ପାଟଣା ହାଟକୁ । ମାଘୁଆଣି ବର୍ଷା ପରେ ଭଲ ବଳଦହଳେ ଆଣିବାକୁ, ଚାଷପାଇଁ । ସମୟ ସକାଳ ଛଅଟା ପାଖାପାଖି । ହଠାତ୍ ଶଂଖ ଶବ୍ଦ ଶୁଭିଲା ଓ ପରେ ପରେ ଜନଗଣ ମନ ଅଧିନାୟକ ଜୟ ହେ, ଜାତୀୟ ସଂଗୀତ ଗାନ ଆରମ୍ଭ ହେଲା । ଆମେ ସେଠି ସାଇକେଲ୍‌ରୁ ଓହ୍ଲାଇ ଜାତୀୟ ସଂଗୀତ ଓ ଜାତୀୟ ପତାକାକୁ ସମ୍ମାନ ଜଣାଇଲୁ । ଫୁଲ, ଧୂପ, ଦୀପ ସହିତ ଭାରତ ମାତାର ଜୟ ଧ୍ୱନି ଝଙ୍କୃତ ହେଲା । ପତାକା ଉତ୍ତୋଳନ ପରେ ପରେ ପାଖରେ ଥିବା ବଂଶଧର ଓ ଗ୍ରାମବାସୀଙ୍କୁ ନାରଣବାବୁ ତାଙ୍କ କଷ୍ଟ ଲବ୍ଧ ସ୍ୱାଧୀନତା କଥା କହୁଥିଲେ । ସ୍ୱାଧୀନତା ପରେ ଦେଶକୁ ଚଳାଇବା ପାଇଁ ଆମେ ନିୟମ ପ୍ରଣୟନ କଲେ ତାହା ହିଁ ସମ୍ବିଧାନ । ଆଜି ସେହି ସମ୍ବିଧାନର ଜନ୍ମଦିନ ଗଣତନ୍ତ୍ର ଦିବସ । ତାଙ୍କ କହିବା ଭିତରେ ତାଙ୍କ ଶରୀର ରୋମାଞ୍ଚିତ ହେଉଥାଏ, ଆନନ୍ଦାଶ୍ରୁ ବହିଯାଉଥାଏ । ସେ ଭାବଗଦଗଦ ହୋଇ ପଡୁଥାନ୍ତି । ସେଦିନ ଥିଲା ଜାନୁୟାରୀ ୨୬ ତାରିଖ ।

ଦେଖିଲି ତାପରେ ଆରମ୍ଭ ହେଲା ଛୋଟ ଛୋଟ ଭବିଷ୍ୟତ ନାଗରିକଙ୍କୁ ସ୍ନେହର ପ୍ରତୀକ ମିଷ୍ଟାନ୍ନବଣ୍ଟନ । ଏସବୁ ପରେ ମୋ ବାପା ତାଙ୍କୁ ନମସ୍କାର ଜଣାଇଲେ । ସେ ପଚାରିଲେ କେମିତି ଅଛ ? ସବୁ ଭଲତ ? ଇଏ କିଏ ? ସାଂଗରେ ମୁଁ ଥିଲି । କହିଲେ ପୁଅ, ମାଟ୍ରିକ୍ ପରୀକ୍ଷା ଦେଇଛି । କଣ ପଢ଼ିବ ପଚାରିଲେ ସେହି ମହାତ୍ମା । ବାପା କହିଲେ ଭଲ ନମ୍ବର ରଖିବ ବୋଲି ଆଶା, ଭୁବନେଶ୍ୱରରେ ପଢ଼ାଇବାକୁ ଇଚ୍ଛା କରିଛି ଯେ ହେଲେ ସିଟ୍ ମିଳିଲେତ । ସେହି ଋଷିପ୍ରତିମ ଆଜାନୁଲମ୍ବିତ ହସ୍ତ, ବିରାଟକାୟ ବ୍ୟକ୍ତିତ୍ୱ, ଗୈରିକ ବସନଧାରୀ, ଆଡ଼ମ୍ବର ଶୂନ୍ୟ ବ୍ୟକ୍ତି, ସ୍ମିତହାସ୍ୟ ହସି କହିଲେ କିଛି ଅସୁବିଧା ହେବନି, 'ଭାଗବତ ପରା ଅଛି ସବୁ ସୁବିଧା କରିଦେବ । ମୋ ପାଟିରୁ ସ୍ୱତଃ ବାହାରି ଆସିଲା ଭାଗବତ ସେହି ଋଷିପ୍ରତିମ ଉଦାରଚେତା ବ୍ୟକ୍ତିତ୍ୱ ହସି ହସି କହିଲେ ହଁ ଭାଗବତ, ତୁମ ବିଧାୟକ ଭାଗବତ ବେହେରା । ତୁମମାନଙ୍କ ଭାଗବତ ଭାଇ, ଛାତିରେ ମୋର ଛନକା ପଶିଗଲା, ଆମ ସ୍କୁଲ ବାର୍ଷିକଉତ୍ସବକୁ ଯାଇଥିବା ଗଣ ଶିକ୍ଷା ମନ୍ତ୍ରୀ ଭାଗବତ ଭାଇ । ମୋ ବାପା କହିଲେ ବଡ଼ ଭାଇଙ୍କ ପୁଅ । ସେଦିନ କିନ୍ତୁ ସ୍କୁଲ ବାର୍ଷିକ ଉତ୍ସବ ସଭାରେ ଭାଗବତଭାଇଙ୍କ ବ୍ୟକ୍ତିତ୍ୱ ଚିନ୍ତା କରି ମାନସଚକ୍ଷୁରେ ଦେଖୁଥିଲି ତାଙ୍କ ବାପାମାଆଙ୍କୁ କିନ୍ତୁ ପାରୁନଥିଲି ଚିନ୍ତା କରି ।

ସମ୍ମୁଖରେ ଦେଖିଲି ସେହି ମହାତ୍ମାଙ୍କୁ । ବିଶାଳକାୟ ଶରୀର । ମୁହଁରେ ଫୁଟି ଉଠୁଛି ଶତ ସିଂହର ଉଜ୍ଜ୍ୱଳତା, ଆଜାନୁଲମ୍ବିତ ବାହୁ, ଋଷି ପ୍ରତୀମ କଥାବସ୍ତ୍ରରେ ଆଚ୍ଛାଦିତ ଶରୀର । ହୃଦୟରେ ବାତ୍ସଲ୍ୟ ପ୍ରେମର ଫଲ୍‌ଗୁ । ହାତରେ ତ୍ରିରଙ୍ଗା, ମନ ଭିତରେ ଦେଶପ୍ରେମର ବହ୍ନି, ଆଖିରେ ଦେଶକୁ ଆଗେଇ ନେବାର ସ୍ୱପ୍ନ । ମୋ ଭାବନାକୁ ପ୍ରତିହତ କରି ବାପା କହିଲେ ଇଏ ହେଉଛି ନାରାୟଣ ଭାଇ ! ନାରାୟଣ ବେହେରା, ଆମ ଅଞ୍ଚଳର ବବା (ବଡ଼ବାପା) ତାଉ । ମୁଣ୍ଡିଆ ମାର, ପାଦଧରି ମୁଣ୍ଡିଆ ମାରିଲି ।

ତାଙ୍କର ଆଶୀର୍ବାଦର ହାତ ମୋ ମୁଣ୍ଡକୁ ଆଉଁସିଦେଲା । ପିଲାମନରେ ଭାବିଲି ଭାଗବତଭାଇ ପରିଶ୍ରମକୁ ସୃଷ୍ଟି କରିଥିବା ମଣିଷଟିର ଅମୃତ ସ୍ପର୍ଶ ପାଇଁ ମୁଁ ଧନ୍ୟ ହୋଇଛନ୍ତି । ତାଙ୍କ ପାଦଧୂଳି ମୁଣ୍ଡରେ ମାରିଲି, ତାଙ୍କଠାରୁ ବିଦାୟ ନେଇ ବାବା ମୋର ହାଟକୁ ଯିବାକୁ ବହାରିଲେ, ସାଇକେଲ୍‌ରେ ନ ବସି ଚାଲିଚାଲି ଚାଲିଲୁ ସେଠୁ ଗୋପପୁରଠୁ ମାଣିକପାଟଣା ହାଟ (ବାହାଡ଼ା ଝୋଲା) ମାତ୍ର ଦୁଇ କିଲୋମିଟର, ବାପା ଆରମ୍ଭ କଲେ -

ତୁ ନାରଣ ଭାଇଙ୍କ ବିଷୟରେ ଜାଣିନୁ । ସେ ଭାରି ସ୍ନେହୀ ମଣିଷ, ଶିକ୍ଷା ପାଇଁ ତାଙ୍କର ଅବଦାନ 'ନୟାଗଡ଼'କୁ କମ ନୁହେଁ, ନୟାଗଡ଼ କଲେଜ, ରଘୁନାଥ ମହାବିଦ୍ୟାଳୟ, ରଘୁନାଥ ହାଇସ୍କୁଲ ନୟାଗଡ଼ ପ୍ରଜାମଣ୍ଡଳ ମହିଳା ମହାବିଦ୍ୟାଳୟ, ବାହାଡ଼ା ଝୋଲା ହାଇସ୍କୁଲ, ବାଳିକା ହାଇସ୍କୁଲ, ହରିପୁର ପ୍ରାଇମେରି, ହରିପୁର ହାଇସ୍କୁଲର ସେ ପ୍ରତିଷ୍ଠାତା ସଭ୍ୟ । ସେ ଚାକିରିରେ ଶିକ୍ଷକ ନଥିଲେ ବି ସେ ଶିକ୍ଷା ପାଇଁ ଶିକ୍ଷକ ଥିଲେ । ସେ ଜଣେ ଶ୍ରେଷ୍ଠ ଶିକ୍ଷାବିତ୍, ପ୍ରଜା ଆନ୍ଦୋଳନର ଜଣେ ମୁଖ୍ୟ ପୁରୋଧା । ଆଧୁନିକ କୃଷି ପ୍ରଣାଳୀ, ଅମଳକ୍ଷମ ଚାଷ, ଜଳସେଚନ ପାଇଁ ବନ୍ଧ ନିର୍ମାଣ, ସେ ଅଞ୍ଚଳରେ ତାଙ୍କ ପ୍ରେରଣାର ସଫଳରୁ ରୂପାୟନ ହୋଇଛି । ସେ ଜଣେ ପ୍ରକୃତି ମିତ୍ର ଅଟନ୍ତି । ନିଜେ ବୃକ୍ଷ ରୋପଣ କରିବା ସହିତ, ଜଙ୍ଗଲ, ଜମି, ଜଳ, ପାଇଁ ସେ ସବୁ ବେଳେ ବ୍ୟାକୁଳ ଥିଲେ । ସେ ଜଣେ ପରିବେଶବିତ୍ ଅଟନ୍ତି । ଖାଲି ସେତିକି ନୁହେଁ ରାଜନୀତିରେ ସେ ଜଣେ ବିଚକ୍ଷଣ ପଣ୍ଡିତ ଥିଲେ ସମାଜବାଦୀ ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରି ଡଂ ବିଶ୍ୱେଶ ରାୟଙ୍କୁ ନିର୍ବାଚନ ଦାୟିତ୍ୱ ଦେଇ ତାଙ୍କୁ ମଧ୍ୟ ଆନ୍ଧ୍ରପ୍ରଦେଶରୁ ଜିତାଇ ଥିଲେ । ସେ ଭାରି ସଂସ୍କୃତି ସମ୍ପନ୍ନ ଅଟନ୍ତି, ମହିମାଧର୍ମରେ ଦିକ୍ଷୀତ ହୋଇ ସାଧୁସନ୍ୟାସୀ ଗହଣରେ ଭଗବତ୍ ଚିନ୍ତା, ଧର୍ମସଭା, ଧର୍ମ ଆଲୋଚନା କରିବା ସହିତ ନିଜ କାମ ନିଜେ କରୁଛନ୍ତି । ଚରଖା ଆନ୍ଦୋଳନ ଚଳାଇ ତାଙ୍କ ଘରକୁ ଏକ ସାବରମତୀ ଆଶ୍ରମର ମାନ୍ୟତା ଦେଇଛନ୍ତି । ନିଶା ସେବନ କରିବା ଗୁରୁଜନଙ୍କୁ ସମ୍ମାନ, ବୟସ୍କଙ୍କୁ ସମ୍ମାନ ଓ ସୁବିଧା ପାଇଁ ସେ ଏବେ ମଧ୍ୟ ସଂଗ୍ରମରତ । ସେ ଅତ୍ୟନ୍ତ ବନ୍ଧୁବତ୍ସଳ, ସାଂରଗଧର ଦାସ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଶୁକ୍ର ବେହେରା, ବିଶ୍ୱନାଥ ପଣ୍ଡିତ ଜୟପ୍ରକାଶ ନୟକ, ପବିତ୍ର ଦାସ, ବାଙ୍କ ଦାସ, ସତ୍ୟନାରାୟଣ ରେଡ଼ି, ସମରେନ୍ଦ୍ର ବସୁଙ୍କ ପରି ବନ୍ଧୁମାନେ ତାଙ୍କର ଅତି ନିକଟ । ବାପା ପୁଣି କହିଲେ ସେ ଦୀନ ଦୁଃଖି ଦରିଦ୍ରଙ୍କ ପାଇଁ ଗୋପବନ୍ଧୁ ପରି । କାହା ଦୁଃଖ ଦେଖିଲେ ସେ ଦୁଃଖରେ ଭାଙ୍ଗି ପଡନ୍ତି । କେହି ବିପଦ ଆପଦରେ ପଡ଼ିଲେ ସାହାଯ୍ୟ କରିବା ପାଇଁ, ଚିଠି ଲେଖନ୍ତି, ଫୋନ୍ କରନ୍ତି କିମ୍ବା ନିଜେ ମଧ୍ୟ ଯାଆନ୍ତି, ଥରେ ବିଶ୍ୱନାଥ ବାବା କହିଥିଲେ, ମହିମାଧର୍ମର ଉପଯୁକ୍ତ ସମ୍ମାନ ତୁମେ ରଖିଛ । ଭୀମଭୋଇଙ୍କର ଅନେକ କଥା ତୁମେ ଅକ୍ଷରେ ଅକ୍ଷରେ ପାଳନ କରୁଛ । ତୁମେ ତ୍ୟାଗପୂତ ଜୀବନରେ ତୁମର ବ୍ରତ ହେଉଛି "ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ ।"

ଭୁବନେଶ୍ୱର ବସ ଆସିଲା ସେହି ପୂଜ୍ୟ ବ୍ୟକ୍ତିମାନେ ବସ୍‌ରେ ବସିଲେ ମୁଁ କିନ୍ତୁ ଘରକୁ ଫେରି ଆସି ବାବାଙ୍କ ସହିତ ପରଦିନ ସେହି ମହାତ୍ମାଙ୍କୁ ଦର୍ଶନ କରିବା ପାଇଁ ସ୍ଥିର କଲି ।

# ସଂଗ୍ରାମର ଅନ୍ୟ ନାମ ନାରାୟଣ ବେହେରା

ନାରାୟଣ ବେହେରା !

ନୟାଗଡ଼ ହେଉଛି 'ସଂଗ୍ରାମ'ର ମାଟି । ଏଠାରେ ଜନ୍ମ ହୋଇଛନ୍ତି ଅନେକ ବିପ୍ଳବୀ, ସଂଗ୍ରାମୀ, ସତ୍ୟାଗ୍ରହୀ ଓ ସାଧକବୃନ୍ଦ । ନାରାୟଣ ବେହେରା ହେଉଛନ୍ତି ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେ କବି ନୁହଁନ୍ତି କି ଲେଖକ ନୁହଁନ୍ତି । ଶତକଡ଼ା ଶହେ ଭାଗ ଜଣେ ଚାଷୀ - ଜଣେ ସଚ୍ଚା ସଂଗ୍ରାମୀ, ବିଦ୍ରୋହୀ ଓ ବିପ୍ଳବୀ । 'ନୟାଗଡ଼' ବହୁକାଳ ଯାଏ ଅନ୍ଧାରୀ ମୂଳକ - ରାଜୁଡ଼ା ଶାସନାଧୀନ ଥିଲା । ରାଜା ଥିଲେ ସର୍ବେସର୍ବା । ତାଙ୍କ ଆଦେଶରେ ସତେ ଯେପରି ଚନ୍ଦ୍ର-ସୂର୍ଯ୍ୟ ଆତଜାତ ହେଉଥିଲେ, ପବନ ବୋହୁଥିଲା, ନଦୀ-ଝରଣା କଳକଳ କରି ବୋହି ଯାଉଥିଲା । ପାହାଡ଼, ପର୍ବତ, ବଣ, ଜଙ୍ଗଲ ମୁଣ୍ଡ ଟେକିଥିଲା, ଜଂଗଲରେ ବାଘ-ମିରିଗ ବଣ୍ୟଜନ୍ତୁ ଭ୍ରମଣ କରୁଥିଲେ !! ଏ ପ୍ରକାର ଧାରଣା ବହୁଦିନ ପର୍ଯ୍ୟନ୍ତ ଲୋକମାନଙ୍କ ମୁଣ୍ଡରେ ବସା ବାନ୍ଧିଥିଲା । ରାଜାଙ୍କ ବିପକ୍ଷରେ ପଦୁଟିଏ ପ୍ରତିବାଦ କରିବା ଥିଲା ମହା ଅପରାଧ !!! ନୟାଗଡ଼ବାସୀ ଥିଲେ ସରଳ, ନିରୀହ । ସେମାନଙ୍କ ଉପରେ ଶୋଷଣ, ଜୁଲମ, ଅତ୍ୟାଚାର ଓ ଅବିଚାର କରିବାକୁ ରାଜା ଏବଂ ରାଜକର୍ମଚାରୀମାନେ ଯଥେଷ୍ଟ ସୁଯୋଗ ପାଇଥିଲେ । ରାଜୁଡ଼ା ଶାସନର ଏଇ ଆସ୍ପର୍ଦ୍ଧା, ଦମ୍ଭ, ଗର୍ବ, ଅହଂକାର କିନ୍ତୁ ଚିରକାଳ ରହିଲା ନାହିଁ । ଏଇ ରାଜଶାସନ ବିରୁଦ୍ଧରେ ଗରିବ, ନିରୀହ, ଅଜ୍ଞ, ନିରକ୍ଷର ମୂକ ଜନତା କ୍ରମଶଃ ସ୍ୱର ଉତ୍ତୋଳନ କଲେ । ଏହା ପରିଶେଷରେ ମହା ବିଦ୍ରୋହରେ ପରିଣତ ହୋଇଥିଲା । ଏଥିପାଇଁ ଗରିବ, ଶୋଷିତ, ନିର୍ଯାତିତ ପ୍ରଜାମାନଙ୍କୁ କମ୍ ମୂଲ୍ୟ ଦେବାକୁ ପଡ଼ିନାହିଁ !!!

ନାରାୟଣ ବେହେରା ଥିଲେ - ସେଇ ଶୋଷଣ, ଯନ୍ତ୍ରଣା, ଅତ୍ୟାଚାର ଓ ଅବିଚାରର ଜଣେ ଭୁକ୍ତଭୋଗୀ ଓ ପ୍ରତ୍ୟକ୍ଷଦର୍ଶୀ । ତାଙ୍କର ବାପା ପାଣୁ ବେହେରା । ସେ ନିଜେ ଏବଂ ପରେ ପରେ ତାଙ୍କର ସୁଯୋଗ୍ୟ ସନ୍ତାନ ଜନନେତା ଭାଗବତ ବେହେରା ମଧ୍ୟ ଏଇ ବିପ୍ଳବର ସ୍ରୋତରେ ସାମିଲ ହୋଇଥିଲେ ।

ଏଭଳି "ତିନିପୀଢ଼ୀ"ର ସଂଗ୍ରାମୀ ଭୂମିକା କ୍ୱଚିତ ପରିବାରରେ ଦେଖାଯାଇଥାଏ । ନାରାୟଣ ବେହେରାଙ୍କ ଜୀବନୀକୁ କେତୋଟି ଅଧ୍ୟାୟରେ ବିଭକ୍ତ କରାଯାଇପାରେ, ଯଥା – କୃଷି ଓ ପାରିବାରିକ ଜୀବନ, ନୟାଗଡ଼ ଗଡ଼ଜାତ ଆନ୍ଦୋଳନ, ଜାତୀୟ କଂଗ୍ରେସରେ ଜଣେ ଶୃଙ୍ଖଳିତ କର୍ମୀର ଜୀବନ, ଦେଶର ସ୍ୱାଧୀନତା ପରେ ସମାଜବାଦୀ ଆନ୍ଦୋଳନ, ଅଲେଖ ଧର୍ମ ଗ୍ରହଣ ଓ ସେଥିପାଇଁ ସମର୍ପିତ ଜୀବନ ଏବଂ ଆଜି ପର୍ଯ୍ୟନ୍ତ ନବେବର୍ଷ ଅତିକ୍ରମ କରିଥିଲେ ବି ସମାଜ ପ୍ରତି ସେ ବେଶ୍ ସଚେତନ ଓ ଚଳ-ଚଞ୍ଚଳ ରହିଛନ୍ତି ।

ବୟସ ଭାରରେ ସେ ନଇଁପଡ଼ିଛନ୍ତି; ମାତ୍ର ତାଙ୍କ ପ୍ରାଣ ଏବେ ବି ବିଦ୍ରୋହ ପାଇଁ ଆନ୍ଦୋଳିତ । ଏଇ 'ଶତାବ୍ଦୀ ପୁରୁଷ'ଙ୍କ ଜୀବନୀ ଭବିଷ୍ୟତ ନାଗରିକମାନଙ୍କ ପାଇଁ ଏକ ଗବେଷଣାସାପେକ୍ଷ ବିଷୟବସ୍ତୁ ଯାହାର ପୁଙ୍ଖାନୁପୁଙ୍ଖ ଚର୍ଚ୍ଚା, ଅଧ୍ୟୟନ ଓ ଗବେଷଣା ଏକାନ୍ତ ଅପରିହାର୍ଯ୍ୟ ।

ଜାତିର ଜନକ ମୋହନ ଦାସ କରମଗୃନ୍ଦ ଗାନ୍ଧୀ (ବାପୁଜୀ) ଏବଂ ସତ୍ୟବାଦୀ ବକୁଳ ବନର ସାଧକ ଦୀନ ଦୁଃଖିର ସହୋଦର ଜାତିପ୍ରାଣ ଉତ୍କଳମଣି ଗୋପବନ୍ଧୁ ଦାସଙ୍କର ପରୋକ୍ଷ ସଂପର୍କ, ତ୍ୟାଗ ଓ ତିତୀକ୍ଷା ସମ୍ପର୍କରେ ସେ ଆସିଛନ୍ତି ।

ସତ୍ୟବାଦୀ ପଞ୍ଚସଖାର ଅନ୍ୟତମ ସାଧକ ଋଷିପ୍ରାଣ ଆଚାର୍ଯ୍ୟ ହରିହର, ଗଡ଼ଜାତ ଗାନ୍ଧୀ ସାରଙ୍ଗଧର ଦାସ, ଭୂଦାନ ଆନ୍ଦୋଳନର ପ୍ରବର୍ତ୍ତକ ସନ୍ଥ ବିନୋବା, ଜନନେତା ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ, ଉମାଚରଣ ପଟ୍ଟନାୟକ, ମାଳତୀ ଦେବୀ ଚୌଧୁରୀ ପ୍ରମୁଖଙ୍କୁ ପ୍ରତ୍ୟକ୍ଷ ଭାବେ ଦେଖିଛନ୍ତି ଓ ସେମାନଙ୍କ ସଂସ୍ପର୍ଶରେ ଆସିଛନ୍ତି । ପୁନଶ୍ଚ ସ୍ୱାଧୀନତା ସଂଗ୍ରାମ କାଳରେ ଏବଂ ସ୍ୱାଧୀନତା ପରେ କୃଷକ, ଶ୍ରମିକ ଆନ୍ଦୋଳନର ମହାରଥୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବାଙ୍କବିହାରୀ ଦାସ, ବିଶ୍ୱନାଥ ପଣ୍ଡିତ, ନିଶାମଣି ଖୁଣ୍ଟିଆ, ଧୂଳୀଶ୍ୱର ବସ୍ତିଆ, ହରିହର ବାହିନୀପତି, ରାଜକିଶୋର ସାମନ୍ତରାଏ ପ୍ରମୁଖ ତୁଙ୍ଗ ସମାଜବାଦୀ ନେତାଙ୍କ ସହ ଏକତ୍ର କାର୍ଯ୍ୟ କରିଛନ୍ତି, ଆନ୍ଦୋଳନ କରିଛନ୍ତି ଓ କାରାବରଣ ମଧ୍ୟ କରିଛନ୍ତି । ଏଭଳି ସୁଯୋଗ କ୍ୱଚିତ ଲୋକଙ୍କ ଭାଗ୍ୟରେ ଯୁଟିଥାଏ ।। ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ ସଂପୂର୍ଣ୍ଣ ବିପ୍ଳବ, ଇନ୍ଦିରାଗାନ୍ଧୀଙ୍କ

ସ୍ୱୈରାଗ୍ବରୀ ଶାସନ ବିରୁଦ୍ଧରେ ଜନ ଆନ୍ଦୋଳନ ଓ କେନ୍ଦ୍ରରେ 'କଂଗ୍ରେସ ଶାସନ ପତନ'ର ସେ ପ୍ରତ୍ୟକ୍ଷଦର୍ଶୀ ଓ ଜନ ଆନ୍ଦୋଳନର ଜଣେ ସକ୍ରିୟ କର୍ମୀର ଭୂମିକାରେ ମଧ୍ୟ ନିକଟ ଅତୀତରେ ଘଟିଯାଇଥିବା 'କଳିଙ୍ଗ ନଗର', 'କାଶୀପୁର' ଇତ୍ୟାଦି ଅଞ୍ଚଳର ଲୋମହର୍ଷଣକାରୀ ଘଟଣାବଳୀ ତାଙ୍କର ବିଦ୍ରୋହୀ ପ୍ରାଣରେ ସ୍ଫୁଲିଙ୍ଗ ସୃଷ୍ଟି କରିଛି ।

ସେଇ 'ଶତାବ୍ଦୀ ପୁରୁଷ'ଙ୍କ ଡାଏରି, ଟିପାଖାତା ଏବଂ ସାକ୍ଷାତକାରରେ ଯେତିକି ତଥ୍ୟ ମିଳିଛି ତାହା ଭବିଷ୍ୟତ ନାଗରିକମାନଙ୍କୁ ଯେ ଅପୂର୍ବ ପ୍ରେରଣା ଯୋଗାଇବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଆମେ ତାଙ୍କର ନିରାମୟ ଜୀବନ ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛୁ ।



ବଶମ୍ବଦ

ବିଦ୍ୟାଧର ବାରିକ

ସଭାପତ



ପ୍ରଫୁଲ୍ଲ କୁମାର ଦାସ

ସାଧାରଣ ସଂପାଦକ

ଭାଗବତ ବେହେରା ସ୍ମୃତି ସଂସଦ,

ଭୁବନେଶ୍ୱର

ଭୁବନେଶ୍ୱର

ତା ୨୬-୦୧-୨୦୦୯

## କୃତଜ୍ଞତା, ଶୁଭେଚ୍ଛା ଓ ଆଶୀର୍ବାଦ

ମୋର ଜନ୍ମ ତା ୨୦-୪-୧୯୧୮ ମସିହା ରାମନବମୀ ବାସିଦିନ 'ଦଶମୀ' ତିଥିରେ । ମୋତେ ନବେ ବର୍ଷ ପୂରିଗଲାଣି । ହାତ, ଗୋଡ଼, ଅଙ୍ଗ-ପ୍ରତ୍ୟଙ୍ଗ ସ୍ଥିର ହୋଇଆସିଲାଣି । ମୁଁ ପାଚିଲା ତାଳ । ଦଲକାଏ ପବନରେ କେତେବେଳେ ଝଡ଼ି ପଡ଼ିବି ! ମୋ ଆଗରୁ ଅନେକ ଚାଲିଗଲେଣି । ମୋର ପଛରୁ ବି କେତେକ ଗଲେଣି । ମୋର ସାଥି ଓ ସହଯୋଦ୍ଧାଙ୍କ ଭିତରୁ ଯେଉଁମାନେ ଏବେ ମୁମୂର୍ଷ ଅବସ୍ଥାରେ ବିଛଣାରେ ପଡ଼ିଛନ୍ତି - ଯିବା ଯିବା ହେଉଛନ୍ତି ସେମାନଙ୍କୁ ସମସ୍ତଙ୍କୁ ମୁଁ ଠିକ୍‌ଭାବେ ସ୍ମରଣ କରିପାରୁ ନାହିଁ । ଜୀବନ ସଂଗ୍ରାମରେ ଦେଶସେବାର ମୋର ନଗଣ୍ୟ ଅବଦାନକୁ ଲୋକ ଲୋଚନକୁ ଆଣିବାକୁ ଯେଉଁ ସହୃଦୟ ବ୍ୟକ୍ତି ଓ ଚିନ୍ତକମାନେ ଉଦ୍ୟମ କରୁଛନ୍ତି ସେମାନଙ୍କ ପ୍ରତି ମୁଁ ଗଭୀର କୃତଜ୍ଞ । ସେମାନଙ୍କ ମଧ୍ୟରେ ମୋର ସ୍ୱର୍ଗତ ପୁତ୍ର ଭାଗବତ ବେହେରା (ପୂର୍ବତନ ମନ୍ତ୍ରୀ), ସମାଜବାଦୀ ଶ୍ରମିକ କୃଷକ ଆନ୍ଦୋଳନର ସାଥୀମାନେ ବିଶେଷତଃ ତାଙ୍କର ଅନ୍ତରଙ୍ଗ ଗୁଣମୁଗ୍‌ଧ ସାଥୀ, ହିନ୍ଦ୍ ମଜଦୁର ସଭା, ରାଜ୍ୟ କାର୍ଯ୍ୟକାରୀ ସଭାପତି, ସମାଜବାଦୀ ଚିନ୍ତକ, କବି ଓ ସମାଜସେବୀ ଶ୍ରୀମାନ ବିଦ୍ୟାଧର ବାରିକ (ରାଉରକେଲା) ଏବଂ 'ସାମାଜିକ ନ୍ୟାୟ ଆନ୍ଦୋଳନ'ର ଅନ୍ୟତମ ପ୍ରବକ୍ତା, ଉତ୍କଳ ଯାଦବ ମହାସଭାର ସେକ୍ରେଟାରୀ ଜେନେରାଲ ଶ୍ରୀମାନ ପ୍ରଫୁଲ୍ଲ ଦାସ (ଭୁବନେଶ୍ୱର)ଙ୍କ ମହତ ଭୂମିକା ରହିଛି ।

ମୋର ମଧ୍ୟମ ପୁତ୍ର ଶ୍ରୀମାନ ସରୋଜ ଏ ଦିଗରେ ଯୋଗସୂତ୍ର ଭୂମିକାରେ ଅବତୀର୍ଣ୍ଣ ହୋଇ ଉକ୍ତ କାର୍ଯ୍ୟ ସାଧନରେ ଅଗ୍ରଣୀ ଭୂମିକା ନେଇଛି । ସେମାନଙ୍କ ତାଡ଼ନା ଓ ପ୍ରେରଣାରେ ମୁଁ ଉତ୍ସାହିତ ହୋଇ 'ଜୀବନ ସଂଗ୍ରାମ'ର କିଛି ଇତିବୃତ୍ତି ଲେଖୁଛି । ଏହା ମୋର ସଂପୂର୍ଣ୍ଣ ଜୀବନୀ ନୁହେଁ - ମହାକାଳର ଆଁ ଭିତରେ ଜୀବନ ସଂଗ୍ରାମରେ ଘଟିଯାଇଥିବା କେତୋଟି ଘଟଣାବଳୀ ଓ ତହିଁରେ 'ଗୁଣ୍ଡୁଚିମୂଷା' ଭଳି ମୋର ନଗଣ୍ୟ ଦେଶସେବାର ଅବଦାନର ଏହା ଏକ ଅଧ୍ୟାୟ

ମାତ୍ର । ପୁଣି ବୟସ୍ୟାଧିକ ମାନସିକ ଭାରସାମ୍ୟର ଅସ୍ଥିରତା ଭିତରେ ଯାହା ମନେ ପଡ଼ିଲା ତାହା ଲେଖିଯାଉଛି ବା କହିଯାଉଛି । ସୁତରାଂ ଘଟଣାବଳୀର ଧାରାବାହିକତା ରକ୍ଷା କରିବା ସମ୍ଭବ ନୁହେଁ । ମୋ ପୂର୍ବରୁ 'ନୟାଗଡ଼ରେ ପ୍ରଜା ଆନ୍ଦୋଳନର ଇତିହାସ' ଲେଖାଯାଇଛି - ଅନେକ ସଂଗ୍ରାମୀ ଶୁଭ ଚିନ୍ତକ, ପ୍ରଗତିଶୀଳ କବି, ଲେଖକ, ରାଜନେତା ଓ କର୍ମୀ ମଧ୍ୟ ଅନେକ କଥା ଲେଖିସାରିଛନ୍ତି ଓ ଭବିଷ୍ୟତରେ ଲେଖିବେ । ମୋର ଏଇ କ୍ଷୁଦ୍ର ଉଦ୍ୟମ ବା ଲେଖା ଆଗାମୀ ପିଢ଼ୀର ଯୁବ ସମାଜକୁ ପ୍ରେରଣା ଯୋଗାଇବ ବୋଲି ମୋର ଆଶା ଓ ବିଶ୍ୱାସ ।

ମୋତେ ଜାଣିଥିବା, ଭଲ ପାଇଥିବା ବା ପାଉଥିବା ମୋର ଶ୍ରଦ୍ଧାଭାଜକ ସ୍ନେହର ଅଗ୍ରଜ, ଅନୁଜ ଓ ଶୁଭଚିନ୍ତକମାନଙ୍କୁ କୃତଜ୍ଞତାର ସ୍ମାରକୀ ସ୍ୱରୂପ ମୋ ଜୀବନ ସଂଗ୍ରାମର ଏକ ଅଧ୍ୟାୟର କ୍ଷୁଦ୍ର ଲେଖାଟି ଅର୍ପଣ କରୁଛି, ଏଥିରେ ସହଯୋଗ କରିଥିବା ସମସ୍ତ ବନ୍ଧୁମାନଙ୍କ ପ୍ରତି ଗଭୀର କୃତଜ୍ଞତା ଅର୍ପଣ କରୁଛି ।

'ଗୋପପୁର'
ବାହାଡ଼ାଝୋଲା
ନୟାଗଡ଼
ତା ୨୬-୦୧-୨୦୦୯

ବଶମ୍ବଦ

[signature]

# ସ୍ମୃତି ସ୍ପନ୍ଦନ

## (ଲେଖକଙ୍କ ସହ ସାକ୍ଷାତକାର ବିବରଣୀ)

- ମହାତ୍ମାଗାନ୍ଧୀ ଓଡ଼ିଶାକୁ ଆସି ପୁରୀ ଜିଲ୍ଲାର 'ଡେଲାଙ୍ଗ'ଠାରେ ସାଧାରଣ ଲୋକଙ୍କୁ ଭେଟିଥିଲେ । ସ୍ୱଚକ୍ଷୁରେ ଓଡ଼ିଶାର ଦାରିଦ୍ର୍ୟ ଏବଂ ଓଡ଼ିଶାବାସୀଙ୍କର ଦୁଃଖ, ଦୁର୍ଦ୍ଦଶା ପ୍ରତ୍ୟକ୍ଷ ଅନୁଭବ କରିଗଲା ପରେ ପରେ ଆଣ୍ଠୁଲୁଗା ଖଦଡ଼ ପିନ୍ଧିବାକୁ ଶପଥ ନେଇଥିଲେ । ଆଜୀବନ ସେ ଏଇ ବ୍ରତ ପାଳନ କରିଥିଲେ ।
- ପିଲାବେଳେ ଶୁଣିଥିଲୁ ସତ୍ୟବାଦୀ ବନ ବିଦ୍ୟାଳୟ ପରିଦର୍ଶନ କରି ଜାତିର ଜନକ ମୋହନ ଦାସ କରମଗ୍ନଦ ଗାନ୍ଧୀ (ମହାତ୍ମାଗାନ୍ଧୀ) ଉତ୍କଳମଣି ଗୋପବନ୍ଧୁ ଦାସଙ୍କୁ କହିଥିଲେ - ମୁଁ ଯାହା କରିଛି, ତୁମେ ଆଉ ପାଦେ ଆଗେଇଗଲ, 'ମଣିଷ ତିଆରି କାରଖାନା' ପ୍ରତିଷ୍ଠା କରିପାରିଲ ।
- ନୟାଗଡ଼ 'ଦିଘିରି-ଗାନ୍ଧୀ ଆଶ୍ରମ'ରୁ 'ଖଦଡ଼ ଲୁଗା' କିଣି ପିନ୍ଧିଲାବେଳେ ମନରେ ସ୍ୱଦେଶୀ ଭାବନା ଓ ଜାତୀୟତା ପ୍ରୀତି ଜାଗ୍ରତ ହୋଇଥିଲା ।
- 'ଅମ୍ବର, କିଶାନ, ବାକ୍ସ ଏବଂ ୱାଘା' ଚରଖାରେ ସୁତା କାଟିବା ଓ ଆଶ୍ରମ ଜୀବନ ଓ ଖଦଡ଼ ବସ୍ତ୍ର ପିନ୍ଧିବାକୁ ଜୀବନର ବ୍ରତ କରିଥିଲି ।
- ଆଚାର୍ଯ୍ୟ ହରିହର ଦାସ ଆମ ଅଞ୍ଚଳକୁ ଆସିଥିଲେ । ସକାଳେ କଥା ହେଲା ଆମ ଘରେ ଚୂଡ଼ା ଖାଇବେ; କିନ୍ତୁ ସେ ଆସିଲାବେଳକୁ ମୁଁ 'ବିଲ'କୁ ଗୁଲିଯାଇଥିଲି । ପରେ ସେ ଆସି ଆମ ଦୁଆରୁ ଫେରିଯାଉଥିଲେ, ବାଟରେ ଦେଖାହେଲା । ଯେତେ ଅନୁରୋଧ କଲେ ବି ସେ ଆଉ ଫେରିଆସିଲେ ନାହିଁ । ଏଯାବତ ମୋ ମନରେ ଏଇ ଅବଶୋଷ ରହିଗଲା ।
- 'ସୋସାଲିଷ୍ଟ ପାର୍ଟି ଜାତୀୟ ସମ୍ମିଳନୀ'ରେ ଯୋଗ ଦେବାପାଇଁ 'ବିହାର' ପ୍ରଦେଶର 'ପାଟନା' ଯାଇଥିଲି । ଫେରିଲାବେଳେ 'ରାଞ୍ଚି'ରେ ରହିଲୁ ।

ସେଠାରେ ସାଥୀମାନେ ମୋତେ 'ନୟାଗଡ଼ ରାଣୀ'ଙ୍କ ଘର ଦେଖାଇ ଦେଇଥିଲେ । ନୟାଗଡ଼ ରାଜା ନେପାଳର 'ରାଣା' ରାଜବଂଶର 'ଝିଅ'କୁ ବାହା ହୋଇଥିଲେ । 'ଲଣ୍ଡନ'ରେ ପାଠ ପଢ଼ିବା ବେଳେ ସେମାନଙ୍କ ସଂପର୍କ ହୋଇଯାଇଥିଲା । ରାଜାଙ୍କୁ 'ଯକ୍ଷ୍ମା' ରୋଗ ହେବାରୁ ସେ ଛାଡ଼ି ଚାଲିଯାଇଥିଲେ । 'ବ୍ୟାଙ୍କ'ରେ ଥିବା 'ତେରଲକ୍ଷ' ଟଙ୍କା ତାଙ୍କ ନାମରେ କରାଇ ଦେଇଥିଲେ । ସେ ଯାଇ 'ରାଞ୍ଚି'ରେ ରହିଲେ । ପରେ ରାଜା 'ହିନ୍ଦୋଳରାଜା'ଙ୍କ ଝିଅକୁ ବିବାହ କରିଥିଲେ ।

- ଶ୍ରୀକୃଷ୍ଣ-କଂସକୁ, ରାମ-ରାବଣକୁ, ବାମନ-ବଳିକୁ ମାରିବା ଭଳି ଗାନ୍ଧୀ-ବ୍ରିଟିଶ ସରକାରଙ୍କୁ ପରାଭବ ଦେବାକୁ ଜନ୍ମ ହୋଇଛନ୍ତି ବୋଲି ଲୋକମୁଖରେ ବାଣୀ ପ୍ରଚାରିତ ହୋଇଥିଲା ।

- ସାରଂଗଧର ଦାସ ହେଉଛନ୍ତି - ଗଡ଼ଜାତ ଗାନ୍ଧୀ । ସେ ଥିଲେ ମହାନ ଜନନାୟକ ଓ 'ସମାଜବାଦୀ' ଆନ୍ଦୋଳନ ଏବଂ 'ଗଡ଼ଜାତ ପ୍ରଜା ଆନ୍ଦୋଳନ'ର ନେତା । ସେ ଜଣେ ଜର୍ମାନ ଝିଅଙ୍କୁ ବିବାହ କରିଥିଲେ । ତାଙ୍କ ନାମ ଥିଲା - 'ଫ୍ରିଡ଼ା' । ସେ ଢେଙ୍କାନାଳରେ ଆଖୁଚାଷ ଓ ଚିନିକଳ କରିବାକୁ ଏକ ଫାର୍ମ ଗଠନ କରିଥିଲେ । 'ଢେଙ୍କାନାଳ ରାଜା' ଏଥିପାଇଁ ତାଙ୍କୁ ଜମି ଦେଇଥିଲେ; କିନ୍ତୁ ଏ ଦିଗରେ ସେ ସଫଳ ହୋଇପାରି ନଥିଲେ । ପରେ ସେ ନିଜ ଦେଶକୁ ଫେରି ଯାଇଥିଲେ ।

- ସାରଙ୍ଗଧର ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ବିଶିଷ୍ଟ ଜନନେତା ନୟାଗଡ଼ ଆସି କାବତାପଲ୍ଲୀ ଆଦିବାସୀ ଗାଁରେ ସଭା କଲେ । ଚକରା ବେହେରା ଆମ୍ଭମାନଙ୍କୁ ରୋଷେଇ କରି ଖାଇବାକୁ ଦେଇଥିଲେ ।

- ମୋ ପୁଅ 'ଭାଗବତ' ମାଟ୍ରିକ୍ ପାଶ୍ କରିବା ପରେ 'କଟକ' ରେଭେନ୍‌ସା କଲେଜକୁ ପଢ଼ିବାକୁ ଯାଇଥିଲା । ସୋସାଲିଷ୍ଟ ପାର୍ଟିର ବିଶିଷ୍ଟ ଜନନେତା 'ବିଶ୍ୱନାଥ ପଣ୍ଡିତ' ତା' ପାଇଁ ସକଳ ବ୍ୟବସ୍ଥା କରିଥିଲେ । ସେ 'ଓଡ଼ିଆ ବଜାର'ର ପାର୍ଟି ଅଫିସ୍ ଏବଂ କଟକ ବଡ଼ମେଡ଼ିକାଲ କଲେଜର 'ଚତୁର୍ଥ ଶ୍ରେଣୀ କର୍ମଚାରୀ ସଂଘ' ଅଫିସ୍‌ରେ ରହି ପାଠ ପଢ଼ିଥିଲା । ଛାତ୍ରାବସ୍ଥାରେ

ସେ 'ଶ୍ରୀଲଙ୍କା' ଯାଇଥିଲା । ରାମାୟଣରେ ବର୍ଣ୍ଣିତ 'ସୀତା'ଙ୍କୁ 'ରାବଣ' ଯେଉଁ ଅଶୋକ ବନରେ ବନ୍ଦିନୀ କରି ରଖିଥିଲା ସେଇ ସ୍ଥାନରେ ତାଙ୍କର ରହିବା ବ୍ୟବସ୍ଥା ହୋଇଥିଲା ।

- ସାରଙ୍ଗଧର ଦାସ 'କର୍ପୂର-କେଳି' ଚାଉଳ ଖାଇବାକୁ ଭଲ ପାଉଥିଲେ । ସେ 'ପୁରୀ'ରେ ଥିଲାବେଳେ ବି ମୁଁ ତାଙ୍କୁ ଏଇ ଚାଉଳ ଯୋଗାଇ ଦେଉଥିଲି ।

- ଶ୍ରୀ ରସାନନ୍ଦ ପଟ୍ଟନାୟକ ସବ୍‌ଇନ୍‌ସପେକ୍ଟର ଥିବାବେଳେ ଗାଁରେ (ଗୋପପୁର)ରେ ଅପର ପ୍ରାଇମେରୀ ସ୍କୁଲ ସ୍ଥାପନା ହେଲା । ମୋ ସାନଭାଇ 'ରାମଚନ୍ଦ୍ର' ଏଥିରେ ଶିକ୍ଷକ ଭାବେ ନିଯୁକ୍ତ ହୋଇଥିଲେ ।

- ଶ୍ରୀ ଭ୍ରମରବର ଜେନା ନୟାଗଡ଼ରେ ଏସ.ଡି.ଓ. (S.D.O.) ଥିଲାବେଳେ 'ନୟାଗଡ଼ କଲେଜ' ପ୍ରତିଷ୍ଠା ପରିକଳ୍ପନା କରାଗଲା । ଏଥିପାଇଁ ସର୍ବସାଧାରଣରୁ ଦାନ ସଂଗ୍ରହ କରିବାକୁ ସେ ଜନସାଧାରଣଙ୍କୁ ନିବେଦନ କରିଥିଲେ । ଦାନ ସଂଗ୍ରହ ପାଇଁ 'ବାହାଡ଼ାଝୋଲା'ରେ ସଭା ହେଲା । ଶ୍ରୀ ଦୀନବନ୍ଧୁ ପ୍ରହରାଜ ଓ ଅନ୍ୟମାନେ ଆପତ୍ତି ଉଠାଇ କହିଥିଲେ ଯେ, ଆମେ ହାଇସ୍କୁଲ ପ୍ରତିଷ୍ଠା ପାଇଁ ଚାନ୍ଦା ସଂଗ୍ରହ କରୁଛୁ ପୁଣି କଲେଜ ପାଇଁ ଚାନ୍ଦା କଲେ ଦ୍ୱିଗୁଣ ବୋଝ ପଡ଼ିବ । ମୁଁ ସମସ୍ତଙ୍କୁ ବୁଝାଇ ଦେଲାପରେ ଉପସ୍ଥିତ ଜନତା ସମ୍ମତ ହେଲେ । କଲେଜ ପ୍ରତିଷ୍ଠା ଉଦ୍ୟମ ଚାଲିଲା । ମୋତେ 'କଲେଜ ପରିଚାଳନା କମିଟି'ର ସଭ୍ୟ ରଖାଯାଇଥିଲା ।

- 'ଭାଗବତ' ବିଧାୟକ ନିର୍ବାଚିତ ହେବାପରେ 'ଓଡ଼ଗାଁ ରଘୁନାଥ ମହାବିଦ୍ୟାଳୟ' ପ୍ରତିଷ୍ଠା କରିବାକୁ ଘୋଷଣା କରିଥିଲା । ଏଇ ଉଦ୍ୟମ ପରବର୍ତ୍ତୀ କାଳରେ ସଫଳ ହୋଇଥିଲା ।

- ଓଡ଼ଗାଁ ଝୁଲଣ ମଣ୍ଡପ ସଭାରେ ଜନନେତା ଓ ସୋସାଲିଷ୍ଟ ପାର୍ଟିର ନେତୃବୃନ୍ଦ ରବୀନ୍ଦ୍ର ମୋହନ ଦାସ, ହରିହର ବାହିନୀପତି ପ୍ରମୁଖ ଯୋଗ ଦେଇଥିଲେ ।

◆ ମୋ ଉଦ୍ୟମରେ ସାରଙ୍ଗଧର ଦାସଙ୍କ ନାମରେ ଆମ ଗାଁର 'ମାଇନର ସ୍କୁଲ' ପ୍ରତିଷ୍ଠା ହେଲା ପୂର୍ବରୁ ରସାନନ୍ଦ ପଟ୍ଟନାୟକ ସହଯୋଗ କ୍ରମେ 'ପ୍ରାଥମିକ ବିଦ୍ୟାଳୟ' ପ୍ରତିଷ୍ଠା ହୋଇଥିଲା ।

◆ 'ଭାଗବତ' ମନ୍ତ୍ରୀ ହେବାପରେ 'ହରିପୁର ପଞ୍ଚାୟତ' ସୃଷ୍ଟି ହେଲା ।

◆ ଠାରେ 'ବାଳିକା ହାଇସ୍କୁଲ' ପ୍ରତିଷ୍ଠା ପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା ଓ ଉଦ୍ୟମ କରି ସଫଳ ହୋଇଥିଲି ।

◆ 'ଭୂଦାନ ଆନ୍ଦୋଳନ'ର ପ୍ରବର୍ତ୍ତକ ସନ୍ଥ 'ବିନୋବାଭାବେ' ଓଡ଼ଗାଁରେ ସଭା କରିଥିଲେ । ଏଥିପାଇଁ ମୁଁ ୧ ମାଣ ଜମି ଦାନ କରିଥିଲି । ଅନ୍ୟମାନେ ମଧ୍ୟ ଭୂଦାନ କରିଥିଲେ । ସର୍ବୋଦୟ ପ୍ରଚାରରେ 'କୁବେର ସାହୁ' ଆମ ଅଞ୍ଚଳରେ ମୁଖ୍ୟ ଥିଲେ । ନରସିଂହ ନନ୍ଦ ଓ ମୁଁ ତାଙ୍କ ସହ ଘନିଷ୍ଠ ଭାବେ କାର୍ଯ୍ୟ କରିଥିଲୁ ।

◆ ହରିହର ବାହିନୀପତିଙ୍କ ନିର୍ବାଚନରେ 'ପୁରୀ'ର ବହୁ ଅଞ୍ଚଳ ବୁଲି ନିର୍ବାଚନ ପ୍ରଚାର କରିଥିଲି ।

◆ ସମରେନ୍ଦ୍ର କୁଣ୍ଡୁ ସାଂସଦ (ମନ୍ତ୍ରୀ ହୋଇନଥାନ୍ତି) ଥିଲାବେଳେ ମୁଁ ଓ ମୋ ସ୍ତ୍ରୀ ଦିଲ୍ଲୀ ଭ୍ରମଣରେ ଯାଇଥିଲୁ । ସେ ଆମକୁ ପାର୍ଲିଆମେଣ୍ଟ ଓ ଅନ୍ୟ ସ୍ଥାନ ଦେଖାଇବାର ସବୁ ପ୍ରକାର ବନ୍ଦୋବସ୍ତ କରିଥିଲେ ।

## ବିଡ଼ମ୍ବନା

◆ ଭାରତକୁ ବିଦେଶୀ ଔପନିବେଶ ଶାସନ କବଳରୁ ମୁକ୍ତ କରିବାକୁ ପ୍ରଥମେ କଂଗ୍ରେସ, ପରେ କଂଗ୍ରେସ-ସୋସାଲିଷ୍ଟ ଏବଂ ସ୍ୱାଧୀନତା ପରେ କ୍ଷମତା ଗାଦୀରୁ ମୁହଁ ଫେରାଇ ଦେଶର ଅଗଣିତ ଚାଷୀ-ମୂଲିଆ, ଶ୍ରମଜୀବୀମାନଙ୍କ ପାଇଁ ସଂଗ୍ରାମ କରିବାକୁ ଯେଉଁ ମହାନ ସଂଗ୍ରାମୀମାନେ ବଜ୍ରଶପଥ ନେଇ ଜୀବନକୁ ପାଣି ଛଡ଼େଇ ମୋ ଭଳି ଅଗଣିତ କର୍ମୀଙ୍କୁ ମାର୍ଗ ଦେଖାଇଥିଲେ, ସେଇ ବିପ୍ଳବୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ନିଶାମଣି ଖୁଣ୍ଟିଆ, ବାଙ୍କବିହାରୀ ଦାସ ପ୍ରମୁଖ 'ଇନ୍ଦିରା କଂଗ୍ରେସ'ର ସମାଜବାଦୀ ନିଶାରେ ମୋହାସକ୍ତ

ହୋଇ ୧୯୭୧ ପରେ 'କଂଗ୍ରେସ'ରେ ମିଶି ପଦ-ପଦବୀ ନେବା ବିଡ଼ମ୍ବନା ବ୍ୟତୀତ ଅନ୍ୟ କିଛି ନୁହେଁ ।

◆ ୧୯୩୮-୧୯୪୮ ଦୀର୍ଘ ୧୦ ବର୍ଷ କାଳ 'ନୟାଗଡ଼ ପ୍ରଜାମଣ୍ଡଳ'ର ନେତୃତ୍ୱ ନେଇ ଅକଥନୀୟ ଦୁଃଖ, ଯନ୍ତ୍ରଣା ଓ ନିର୍ଯାତନାର ଶୀକାର ହୋଇଥିବା ଏବଂ ଅନୁଗତ କର୍ମୀମାନଙ୍କ ପ୍ରତି ହୋଇଥିବା ଅନ୍ୟାୟ, ଅତ୍ୟାଗ୍ଚର ଓ ନିର୍ଯାତନାକୁ ଆଖି ଆଗରେ ଦେଖି ସେମାନଙ୍କ ପ୍ରତି ସମ୍ବେଦନଶୀଳ ହୋଇଥିବା ପ୍ରଜାମଣ୍ଡଳର ନେତା ବାଞ୍ଛାନିଧି ସେନାପତି ଓ ଶ୍ରୀଧର ଦାସ ନୟାଗଡ଼ ଗଡ଼ଜାତ ଓଡ଼ିଶା ତଥା ସ୍ୱାଧୀନ ଭାରତରେ ମିଶିବା ପୂର୍ବରୁ ତା ୧୦-୯-୧୯୪୭ ରିଖ ଦିନ ନୟାଗଡ଼ ରାଜାଙ୍କ ଦ୍ୱାରା ଗଠିତ ପରିଷଦର ମନ୍ତ୍ରୀ ହୋଇଥିଲେ । ରାଜା ଥିଲେ ଏଇ ପରିଷଦର ଚେୟାରମ୍ୟାନ । ତାଙ୍କ ଭାଇ ବୃନ୍ଦାବନ ଚନ୍ଦ୍ର ସିଂହଙ୍କୁ ମୁଖ୍ୟମନ୍ତ୍ରୀ କରାଗଲା । ମନ୍ତ୍ରୀ ହେବାପରେ 'ପ୍ରଜାମଣ୍ଡଳ ଅଫିସ୍' କୋଠାର ଦଖଲସ୍ୱତ୍ୱ ବାଞ୍ଛାନିଧି ସେନାପତି, ଶ୍ରୀଧର ଦାସ ଓ ଲକ୍ଷ୍ମଣ ମହାରଣା ନିଜ ନିଜ ନାମରେ କରିନେଲେ । ଏହା ହେଉଛି ଇତିହାସର ବିଡ଼ମ୍ବନା ! ଏଭଳି ଅନ୍ୟାୟ ବିରୁଦ୍ଧରେ ଆମ୍ଭେମାନେ ଆନ୍ଦୋଳନ କରିଥିଲୁ ।

◆ 'ନୟାଗଡ଼'ରେ ଏକମାତ୍ର 'ଜେଲ୍' ଥିଲା । କୌଣସି କ୍ୟାମ୍ପ ଜେଲ୍ ନଥିଲା । ପରବର୍ତ୍ତୀ କାଳରେ ଯେଉଁମାନେ 'କ୍ୟାମ୍ପଜେଲ୍' ନାମରେ 'ପେନ୍‌ସନ୍' ପାଇଲେ ତାହା ଜାଲିଆତି କରାଯାଇଥିଲା ।



# ନୟାଗଡ଼

୧୯୯୩ ମସିହା ଏପ୍ରିଲ ୧ ତାରିଖରେ ଓଡ଼ିଶାରେ ୧୭ଟି ନୂଆ ଜିଲ୍ଲା ସୃଷ୍ଟି ହେଲା । ପୂର୍ବରୁ ୧୩ଟି ଜିଲ୍ଲାକୁ ମିଶାଇ ମୋଟ ଜିଲ୍ଲା ସଂଖ୍ୟା ହେଲା ୩୦ଟି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଏଇ ନୂତନ ଜିଲ୍ଲାମାନ ଗଠନ କରାଗଲା । ଏଥିପାଇଁ ମୋର ଜ୍ୟେଷ୍ଠ ପୁତ୍ର ପୂର୍ବତନ ବିଧାୟକ ପରେ ମନ୍ତ୍ରୀ (ଦୁଇଥର) ସ୍ୱର୍ଗତ ଭାଗବତ ବେହେରାଙ୍କ ମହାନ୍ ଅବଦାନକୁ 'ନୟାଗଡ଼ବାସୀ' କେବେ ବି ଭୁଲିପାରିବେ ନାହିଁ । ପୁତ୍ର ହିସାବରେ ମୋର ତ ଗର୍ବ କରିବା କଥା; ମାତ୍ର ସେ ଥିଲେ ଓଡ଼ିଶା ମାଟିର ଲକ୍ଷୁଆ ପୁଅ । 'ନୟାଗଡ଼ ଜିଲ୍ଲା' ତନ୍ମଧ୍ୟରୁ ଅନ୍ୟତମ । ନୂତନ ନୟାଗଡ଼ ଜିଲ୍ଲାର ପୂର୍ବରେ ଖୋର୍ଦ୍ଧା, ପଶ୍ଚିମରେ ଫୁଲବାଣୀ, ଦକ୍ଷିଣରେ ଗଂଜାମ ଏବଂ ଉତ୍ତରରେ କଟକ ଜିଲ୍ଲା ଅବସ୍ଥିତ । ରାଜୁଡ଼ା ଗଡ଼ଜାତ ନୟାଗଡ଼ ସୀମା କିନ୍ତୁ ଅନ୍ୟ ପ୍ରକାର ଥିଲା । ନୟାଗଡ଼, ଦଶପଲ୍ଲା, ରଣପୁର ଓ ଖଣ୍ଡପଡ଼ାକୁ ନେଇ ଏହା ଗଠିତ ହୋଇଥିଲା । ବ୍ରିଟିଶ ସରକାର ଅମଳରେ ଏହାକୁ 'ଗଡ଼ଜାତ' କୁହାଯାଉଥିଲା । ଏଇ 'ନୟାଗଡ଼'ର ସୃଷ୍ଟି ସଂପର୍କରେ ଅନେକ କିମ୍ବଦନ୍ତୀ ଓ ଲୋକକଥା ପ୍ରଚଳିତ । ଅରଣ୍ୟାନି ପରିବେଷ୍ଟିତ ଏଇ 'ନୟାଗଡ଼' ଭୂଇଁ ଗଂଗବଂଶର ରାଜା ୩ୟ ଭାନୁ ଗଂଗଦେବଙ୍କ ରାଜତ୍ୱ ପୂର୍ବରୁ କେବେ କିଭଳି ଭାବେ ଶାସିତ ହେଉଥିଲା ତା'ର ସଠିକ୍ ଇତିହାସ ନାହିଁ । ମାତ୍ର ୩ୟ ଭାନୁ ଗଂଗଦେବଙ୍କ ରାଜତ୍ୱକାଳ ୧୩୫୨ ଖ୍ରୀଷ୍ଟାବ୍ଦରୁ ୧୩୭୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ଆନୁମାନିକ ୧୩୭୬ ମସିହାରେ ମଧ୍ୟପ୍ରଦେଶ ଅନ୍ତର୍ଗତ 'ରେୱା' ରାଜ୍ୟର ପରିବ୍ରାଜକ ସୂର୍ଯ୍ୟମଣି ସିଂହ 'ଜଗନ୍ନାଥ' ଦର୍ଶନ ପାଇଁ 'ପୁରୀ' ଆସିଥିଲେ । ବାଟରେ 'ଚୁନାମାଟି' ଗ୍ରାମରେ ରାତ୍ରୀଯାପନ କରି ସେଠାରେ ଗୋଟିଏ 'ମଣିଷଖିଆ ବାଘ' ମାରି ଲୋକଙ୍କୁ ବ୍ୟାଘ୍ର ଉପଦ୍ରବରୁ ରକ୍ଷା କରିବାରୁ ଲୋକେ ତାଙ୍କୁ ରାଜା ବୋଲି ଗ୍ରହଣ କରିଥିଲେ । ସୂର୍ଯ୍ୟମଣି ସିଂହ ନିଜେ 'ହିନ୍ଦୁସ୍ଥାନୀ' ହୋଇଥିବାରୁ ତାଙ୍କ ଗାଦିନସୀନ ପରେ ନୂଆକରି ଗଠିତ ଏଇ ରାଜ୍ୟର ନାମ 'ନୟାଗଡ଼' ରଖି ଏହାର ରାଜଧାନୀ 'ଚୁନାମାଟି'ଠାରେ

ପ୍ରତିଷ୍ଠା କରିଥିଲେ । ବଂଶର କୌଣସି ରାଜା 'ଚୁନାମାଟି'ଠାରୁ 'ରଳବ'କୁ ରାଜଧାନୀ ଉଠାଇ ଆଣିଥିଲେ । ରାଜ୍ୟ ପ୍ରତିଷ୍ଠା ହେବାର ଅନ୍ଦାଜ ୨୫୦ ବର୍ଷ ପରେ ଏହି ବଂଶର ନବମ ରାଜା 'ବାଘସିଂହ' ବର୍ତ୍ତମାନର 'ନୟାଗଡ଼'ର ରାଜଧାନୀ ପ୍ରତିଷ୍ଠା କରିଥିଲେ । ନୂତନ 'ନୟାଗଡ଼' ଜିଲ୍ଲାର 'ବାହାଡ଼ାଝୋଲା' ଗ୍ରାମ ପଞ୍ଚାୟତ ଅନ୍ତର୍ଗତ 'ଗୋପପୁର' ଗ୍ରାମରେ ମୋର ଜନ୍ମ ତା ୨୦-୪-୧୯୧୮ରିଖରେ । ଆମ ଗାଁ 'ଗୋପପୁର' ଠାରୁ ୧ କିଲୋମିଟର ଦୂରରେ ବାହାଡ଼ାଝୋଲା ଅବସ୍ଥିତ । ଏଠାରୁ 'ଓଡ଼ଗାଁ' ଦୂରତ୍ୱ ପ୍ରାୟ ୬ କିଲୋମିଟର, ନୟାଗଡ଼ର ଦୂରତ୍ୱ ପ୍ରାୟ ୪୦ କିଲୋମିଟର, ଭଂଜନଗର ପ୍ରାୟ ୨୨ କିଲୋମିଟର ଏବଂ ଶରଣକୁଳ ପ୍ରାୟ୧୭/ ୧୮ କିଲୋମିଟର ଦୂରରେ ଅବସ୍ଥିତ ।

ବଣ, ପାହାଡ଼ ଘେରା ସେ କାଳର ଅଗମ୍ୟ 'ନୟାଗଡ଼' ସହିତ ଅଧୁନା ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣରେ ରାସ୍ତାଘାଟ ସୁଗମ ହୋଇଛି । ସେ ଯୁଗରେ ଏହା ଥିଲା ଏକ ଅନ୍ଧାର ମୂଲକ-ଗଡ଼ଜାତ । ବଣଜଙ୍ଗଲ ବାଟରେ ଅଣଓସାରିଆ ପାଦଚଲା ରାସ୍ତା ଏବଂ 'ଶଗଡ଼'ରେ ଯାତାୟତ, ମାଲ ପରିବହନ ଥିଲା ଏକମାତ୍ର ମାଧ୍ୟମ । 'ବୋଲଗଡ଼' ଓ 'ନୟାଗଡ଼' ମଝିରେ କୁସୁମୀ ନଦୀ ପ୍ରବାହିତ । ଲୋକେ ଡଂଗା ସାହାଯ୍ୟରେ ଏବଂ ଖରାଦିନେ ନଦୀ ଭିତରେ ପାଦରେ ଚାଲି ଏପାରିରୁ ସେପାରି ଯାତାୟତ କରୁଥିଲେ । ବ୍ରିଟିଶ ଅମଳରେ ଏକ ପୋଲ ତିଆରି କରାଯାଇଥିଲା । ତାହା କାଳକ୍ରମେ ଭାଙ୍ଗିଗଲା ପରେ ଅଧୁନା ନୂତନ ପୋଲ ନିର୍ମାଣ ହୋଇ ଯାତ୍ରାପଥ ସୁଗମ ହୋଇଛି ।

## ଗଡ଼ଜାତି ଅଠଧାରୀ ଶାସନ ଓ ନୟାଗଡ଼

ରାଜା ନାରାୟଣ ସିଂହଙ୍କ ରାଜୁତି କାଳରେ 'ନୟାଗଡ଼'ରେ ପ୍ରଜାପୀଡ଼ନ ବଢ଼ି ଯାଇଥିଲା । ରାଜ ସରକାର ଯୋର ଜବରଦସ୍ତ ଲୋକମାନଙ୍କଠାରୁ ବେଠି, ଭେଟି, ମାଗଣ, ରସଦ ଲାଖ ଓ ବହୁ ପ୍ରକାର ଚାନ୍ଦାଭେଦା ଆଦାୟ କରୁଥିଲେ । ପ୍ରତି ୧୦ ବର୍ଷରେ ଥରେ ରାଜସ୍ୱ ବନ୍ଦୋବସ୍ତ କରି ଲୋକଙ୍କ ଆର୍ଥିକ ଅବସ୍ଥା ପ୍ରତି ଦୃଷ୍ଟିଦେଇ ଖଜଣା ବୃଦ୍ଧି କରୁଥିଲେ । ଗ୍ରାମ 'ଚୌକିଦାର'ଠାରୁ ଆରମ୍ଭ କରି 'ସୁପରିନ୍‌ଟେଣ୍ଡେଣ୍ଟ'ଙ୍କ ପର୍ଯ୍ୟନ୍ତ ସମସ୍ତ ରାଜକର୍ମଚାରୀ ଅତି ହୀନ ବ୍ୟବହାର

କରୁଥିଲେ । ଏଇଭଳି ଏକ ଦୟନୀୟ ସାମାଜିକ-ରାଜନୀତିକ ପରିବେଶ ଓ ପରିବେଷ୍ଟନୀ ଭିତରେ ମୋର ଜନ୍ମ ହୋଇଥିଲା ।

## ମୋ ପରିବାର

| | |
|---|---|
| ମୋର ଜେଜେବାପା— | ସଇତ ବେହେରା |
| ଜେଜେମା— | ସୀତା |
| ଅଜା— | କସ୍ତୁରୀ ବେହେରା |
| ଆଇ— | କାଞ୍ଚ |
| ବାପା— | ପାଣ୍ଡୁ ବେହେରା |
| ବୋଉ— | ଚନ୍ଦ୍ରାବତୀ |
| କକା— | ମହନ |
| ପିଉସୀ— | ତୁଳସୀ, ରଇବାରୀ, ସାବିତ୍ରୀ |
| ଆମେ ତିନିଭାଇ— | ନାରାୟଣ, କୃଷ୍ଣଚନ୍ଦ୍ର, ରାମଚନ୍ଦ୍ର |
| ମୋର ପ୍ରଥମ ସ୍ତ୍ରୀ— | ବିମଳା (ଭାଗବତର ମା') |
| ଦ୍ୱିତୀୟ ସ୍ତ୍ରୀ— | ରାଧାରାଣୀ |
| ବଡ଼ପୁଅ— | ଭାଗବତ, ବୋହୂ—ମନ୍ଦାକିନୀ |
| ନାତୁଣୀ/ନାତୁଣୀ ଜ୍ୱାଇଁ— | ମଧୁସ୍ମିତା—ଲଲାଟେନ୍ଦୁ (ମଣ୍ଟୁ) |
| | ମଧୁଲିତା—ଶରତ |
| | ରଶ୍ମିରେଖା—ସରୋଜ |
| | ସ୍ମୃତିରେଖା |
| ବଡ଼ମଝିଆ ପୁଅ— | ସରୋଜ, ବୋହୂ—ପ୍ରଭାତୀ |
| ନାତି— | ସତ୍ୟକାମ (ଟିକୁ), ସତ୍ୟଜିତ (ମୁନ୍) |
| ସାନମଝିଆ ପୁଅ— | ଚିତ୍ତ, ବୋହୂ—ନମିତା |

| | |
|---|---|
| ନାତି— | ଚିନ୍ମୟ (ଚିନୁ), ସୁମିତ୍ (ସେନୁ) |
| ସାନପୁଅ— | ବିଭୂତି, ବୋହୂ—ସୁମିତ୍ରା |
| ନାତୁଣୀ— | ବେବି |
| ବଡ଼ଝିଅ— | ମଞ୍ଜୁ, ଜ୍ୱାଇଁ—ରାଧାମୋହନ |
| ନାତି— | ମହିମାସାଗର, କ୍ଷମାସାଗର |
| ବଡ଼ମଝିଆ ଝିଅ— | ରେଣୁ, ଜ୍ୱାଇଁ—ଜୟକୃଷ୍ଣ |
| ନାତି— | ଅନୁରାଗ (ପିଣ୍ଟୁ) |
| ନାତୁଣୀ— | ସ୍ଥିତପ୍ରଜ୍ଞା (ଇଶା) |
| ସାନମଝିଆ ଝିଅ— | ନଳିନୀ, ଜ୍ୱାଇଁ—ମଦନମୋହନ |
| ନାତି— | ଚନ୍ଦନ (ପିଙ୍କୁ) |
| ସାନଝିଅ— | ସବିତା, ଜ୍ୱାଇଁ—ଗୌରୀଶଙ୍କର (ମିଟୁ) |
| ନାତୁଣୀ— | ସ୍ୱୟଂପ୍ରଭା |
| ନାତି— | ପ୍ରସାଦ |
| କୃଷ୍ଣଚନ୍ଦ୍ରର ପରିବାର— | କୃଷ୍ଣଚନ୍ଦ୍ର, ସ୍ତ୍ରୀ—ତିଳୋତ୍ତମା |
| ପୁଅ— | ବିଜୟ |
| ଝିଅ— | ବସନ୍ତ |
| ରାମଚନ୍ଦ୍ରର ପରିବାର— | ରାମଚନ୍ଦ୍ର, ସ୍ତ୍ରୀ—ମାୟା |
| ପୁଅ— | ଅଶୋକ, ଅଶ୍ୱିନୀ |
| ଝିଅ— | ଅଳକା, ଅଞ୍ଜଳି |



## ନୟାଗଡ଼ର ଜଙ୍ଗଲ ବିଷୟ

'ନୟାଗଡ଼'ର ଜଙ୍ଗଲ ଘରବାରିକୁ ଲାଗି ରହିଥିଲା । ମିରିଗ, ବାର୍‌ହା, ସମ୍ବର, ହାତୀ, ବାଘ, ଗଧିଆ ଜଙ୍ଗଲରେ ଏତେ ପରିମାଣରେ ଥିଲେ ଯେ, ଜମିବାଡ଼ିରେ ପ୍ରାୟ ଅଧାରୁ ପ୍ରାୟ ଧାନ, ମୁଗ, ଚଣା, ବିରି, କୋଳଥ, ରାଶି, ଜଡ଼ା ପ୍ରଭୃତି ନଷ୍ଟ କରିଦେଉଥିଲେ । ପ୍ରତ୍ୟେକ ବିଲରେ ଭାଡ଼ିକରି ଚାଷୀମାନେ ଜଗୁଥାନ୍ତି । ଗୋଟିଏ ଦଳରେ ମିରିଗ ସାଧାରଣତଃ ୨୦ ଗୋଟିରୁ ଅଧିକ ରହନ୍ତି । ବାଘ, ହାତୀ ଭୟରେ ଲୋକମାନେ ଜଙ୍ଗଲ ପାଖକୁ ଯାଆନ୍ତି ନାହିଁ । ବାଘ ଆସି ଭାଡ଼ି ତଳେ ବସୁଥିଲେ । ମୁଁ ଅନେକଥର ଶଗଡ଼ ଆଣିଥିବାବେଳେ ମହାବଳବାଘ ଶଗଡ଼ ଆଗରେ ଠିଆହୋଇଯିବା ଦେଖିଛି । ମିରିଗ, କୁଟୁରା, ସମ୍ବର ମାରିବା ପାଇଁ ସରକାରଙ୍କ ତରଫରୁ ବନ୍ଦ ଥିଲା । ମିରିଗ ଗୋଟିଏ ମାଇଲେ ଫରେଷ୍ଟ ଡିପାର୍ଟମେଣ୍ଟକୁ ୧୫ ଟଙ୍କା ଦେବାକୁ ପଡୁଥିଲା । ମୁଁ ଥରେ ମୋର କକାଙ୍କ ସାଙ୍ଗରେ ଘରଠାରୁ ନୟାଗଡ଼ ଗଲାବେଳେ ବରାଳିଆ ପୋଖରୀ ନିକଟରେ ଗୋଟିଏ ସିଙ୍ଗାଳ ମୁଗ ଖାଇ ମରି ପଡ଼ିଥିଲା । ମୋର କକା ମୋହନ ବେହେରା ଆମ୍ବପଡ଼ାଠାରେ ଫରେଷ୍ଟଗାର୍ଡଙ୍କୁ ଏକଥା କହିଦେଇଗଲେ, ସେ ଆସି ଉକ୍ତ ସିଙ୍ଗାଳକୁ ନିଲାମ କରିଦେଲେ । ସେତେବେଳେ ଜଙ୍ଗଲକୁ ଫରେଷ୍ଟ ବିଭାଗର କଟକଣା ଥିଲା । ଜଙ୍ଗଲରେ ଥିବା ମହାବଳବାଘ ଦିନବେଳେ ବହୁତ ଲୋକଙ୍କୁ ଖାଇଯିବାର ଶୁଣିଛୁ । ଗୋରୁ, ଗାଈ, ମଇଁଷି, ଛେଳି ପ୍ରଭୃତିଙ୍କୁ ପ୍ରତ୍ୟେକ ଦିନ ବାଘ ଖାଉଥିଲା । ମୋର ବାପା ଗାଈ ଚରାଉଥିଲେ । ଆମର ଦୁଇଟି ଗାଈକୁ, ଆମ ଘର ପାଖ 'ଜାମୁଖୋଲ'ରେ ୨ଟି ଗାଈ ବାଘ ମାରିଦେଇଥିଲେ । ସକାଳ ୧୦ ଘଣ୍ଟା ସମୟରେ ମୋର ବାପା ପାଟିକରି ବାଘଠାରୁ ଗାଈ ଛଡ଼ାଇଲେ, କିନ୍ତୁ ସେତେବେଳକୁ ଗାଈ ଦୁଇଟି ମରିଯାଇଥିଲେ । ସେଦିନ ଥିଲା ଶିବରାତ୍ରୀ ୧୯୩୫ ମସିହା ।

## ଜଙ୍ଗଲ ବେଠି, ସଡ଼କ ବେଠି

ରିଜର୍ଭ ଜଙ୍ଗଲ ବେଠିରେ ଡୁଙ୍ଗ ଓଳାଇବା ହେଉଛି ଗୃଷୀ ମୂଲିଆମାନଙ୍କର ଦାୟିତ୍ୱ । କିନ୍ତୁ ଖଣ୍ଡିଏ କାଠ ପାଇବା ପାଇଁ ସେମାନଙ୍କୁ ମନା ଥିଲା । ଏପରିକି ଜାଳେଣି କାଠ ନ ପାଇ ଗୋବରକୁ ଘଷି କରି ଲୋକେ ଜାଳୁଥାନ୍ତି । ନୟାଗଡ଼ ରାଜ୍ୟରେ କୋଠାଘର ନଥିଲା କହିଲେ ଚଳେ । ବାଉଁଶ ଶହକୁ ଗୃରଣା ମିଳୁଥିଲା । ସେଥିରେ ଲୋକେ ଘର କରୁଥିଲେ ।

## ଆଡ଼ିବେଠି

ନୟାଗଡ଼ ଗଡ଼ଜାତ ଶାସନରେ 'ଆଡ଼ିବେଠି' ଚଳୁଥିଲା । ମୁଁ ଦୁଇଦନ ଆଡ଼ିବେଠିରେ ଯାଇଥିଲି । ୧୯୩୫/୩୬ ମସିହାରେ ବରକୁଳା କଲିଆ ନୂଆସାହି ମଧ୍ୟଭାଗରେ ଥିବା ଶାଳଜଙ୍ଗଲ ପ୍ରାୟ ଭାଡ଼ିଠାରୁ ଗୃରିଦିଗରେ ଗୋଲରେ ଦୁଇ ମାଇଲ ଦୂରରେ ଆମ୍ଭେମାନେ ତାଳି ମାରି ମାରି ଗଲୁ । ଗୋଟିଏ ମହାବଳବାଘ ଭାଡ଼ି ନିକଟରେ ଗଲା । ମିରିଗ ଦୁଇ ତିନି ଦଳ ଭାଡ଼ି ପାଖରେ ଗଲେ । ଦକ୍ଷିଣ ପଶ୍ଚିମ ଦିଗରୁ ଥିବା ଲୋକମାନେ ତାଳି ମାରି ମାରି ଆସିଲେ । ଏଥର ତିନି ଗୃରି ଦଳ ମିରିଗ, କୁଟୁରା ସେହି ମହାବଳବାଘ ରାଜା କୃଷ୍ଣଚନ୍ଦ୍ର ସିଂହ ମାନ୍ଧାତାଙ୍କ ଭାଡ଼ି ପାଖକୁ ଗଲେ । ସେ କିଛି ମାରିପାରିଲେ ନାହିଁ । କେବଳ ଗୋଟିଏ ସିଙ୍ଗାଳ ମାରିଥିଲେ । ଶେଷରେ ରାଜା ଜନତାକୁ ଟ୧୫ ପୁରସ୍କାର ଦେଇଥିଲେ । ଉକ୍ତ ଟଙ୍କା ବଣ୍ଟାଯାଇପାରଲା ନାହିଁ । କାରଣ ଏତେ ଲୋକଙ୍କୁ ୧୫ ଟଙ୍କା ବାଣ୍ଟିବା ସମ୍ଭବ ହୋଇପାରିଲା ନାହିଁ । ସେଦିନ ନିରାଶରେ ପ୍ରତ୍ୟେକ ଲୋକ ନିଜ ନିଜ ଗ୍ରାମକୁ ଫେରିଲୁ ।

## ସଡ଼କ ବେଠି

ନୟାଗଡ଼ରେ ପ୍ରତ୍ୟେକ ଖଜଣାଦାର ସଡ଼କ ବେଠିରେ ତିଆରି କରିଥିଲେ । ଗ୍ରାମର ସରହଦ ଯେତେ ମୌଜାର ହେବ ଯେତେ ଖଜଣା – ତାରି ଉପରେ ହିସାବ କରି ସଡ଼କ ତିଆରି ପାଇଁ ଦିଆଯାଉଥିଲା । ଲୋକମାନଙ୍କୁ ମାଡ଼ମାରି ସଡ଼କ ବେଠିରେ କାମ କରାଯାଉଥିଲା । ଲୋକମାନେ ବେଠି ନକରି

ଜମିବାଡ଼ି ଛାଡ଼ି 'ବର୍ମା'କୁ ପଳାଇ ଯାଉଥିଲେ । ପ୍ରତ୍ୟେକ ଲୋକ ସଡ଼କ କଡ଼ରେ ଗଛ ଲଗାଇ ସେଥିରେ ଖରାଦିନେ ପାଣି ଦେଉଥିଲେ । ଗଛ ମରିଗଲେ ମାଡ଼ ହେଉଥିଲା । ପ୍ରତ୍ୟେକ ଗଛରେ ଅଟେଇ ଦେଇ ଚାରିପାଖରେ କଣ୍ଟା ଦେଉଥିଲେ । ସଡ଼କରେ ମାଟି ପକାଇବା ଉପରେ ରଙ୍ଗବଜା ତିନିଫୁଟ ଉଚ୍ଚରେ ଲମ୍ବାରେ ଜାଗା ଦେଉଥିଲେ । ଉକ୍ତ ବଜା ସଡ଼କରେ ବିଛାଇ ତା' ଉପରେ ପାଣି ପକାଇ କାଠଚକି ବାଉଁଶ ଲଗାଇ ଛେଚାଯାଏ । ନୟାଗଡ଼ର ପ୍ରତ୍ୟେକ ସଡ଼କ ବେଠିରେ ହୋଇଥିଲା । ଆମର ହରିପୁର, ଗୋପପୁର, ବାହାଡ଼ାଝୋଲା, ଘଡ଼େଇ ବନ୍ଧ ସରହଦମାନଙ୍କରେ ଜମି ଥିବାରୁ ପ୍ରତ୍ୟେକ ମୌଜାରେ ପ୍ରତ୍ୟେକ ବେଠିରେ କରୁଥିଲେ । ଅବଦୁଲ ସତାର ଖାଁଙ୍କ ଅମଳରେ ସଡ଼କ କାମ ସରିଲା । ଉଭୟ ପଟେଲ, ଅବଦୁଲ୍ ସତାର ଖାଁଙ୍କ ଘର ସମ୍ବଲପୁରରେ । ସେ ସମ୍ବଲପୁର ଲୋକ, କାରଣ ପଲ୍‌ଟିକାଲ ଏଜେଣ୍ଟଙ୍କ ଅଫିସ୍ ସମ୍ବଲପୁରରେ ରହୁଥିବାରୁ ସେଠାର ଲୋକଙ୍କୁ ଚାକିରିର ସୁବିଧା ଦିଆଯାଉଥିଲା ।

## ଗ୍ରାମ ଓ ବିଟ୍‌ଘର

ପ୍ରତ୍ୟେକ ଗ୍ରାମ ମୁଣ୍ଡରେ ବିଟ୍‌ଘର ଥାଏ । ଚୌକିଦାର ବିଟ ଘରେ ରାତ୍ରିରେ ଶୁଏ । ଗ୍ରାମର ପ୍ରତ୍ୟେକ ଘରର ଲୋକମାନେ ପାଳିକରି ସେଠାରେ ଶୋଉଥିଲେ । ଗୋଟିଏ 'ପାଳି ଠେଙ୍ଗା' ଥାଏ । ଯେଉଁ ଲୋକର ପାଳି ତା' ଦୁଆରେ ଠେଙ୍ଗାକୁ ତା'ର ଚାଳରେ ଉକୁଚାଇ ଦିଆଯାଏ । ଉକ୍ତ ଲୋକ ରାତ୍ରିରେ ଶୋଇବ ଦାଣ୍ଡ ବାରଣ୍ଡାରେ । ଶୀତଦିନେ ବହୁ କଷ୍ଟରେ ଶୋଇଥାନ୍ତି । ରାତ୍ରିରେ ପୁଲିସ୍ କିମ୍ବା ଫରେଷ୍ଟର ଆସିଲେ ଉକ୍ତ ପାଳିଆ ଏବଂ ଚୌକିଦାର ଗ୍ରାମର ଅନ୍ୟ ଗ୍ରାମକୁ ତାଙ୍କୁ ଛାଡ଼ିବା ପାଇଁ ଯିବେ । ପ୍ରାୟ ୩ ଜଣ ଲୋକ ଉକ୍ତ କର୍ମଚାରୀମାନଙ୍କର ସାଙ୍ଗରେ ଥିବା ସମସ୍ତ ଜିନିଷପତ୍ର ବୋହିକି ନେଉଥିଲେ । ପୁଲିସ୍ ସିପାହୀ ଜମିଦାରମାନଙ୍କୁ ଚାନ୍ଦାକରି ଡାଲି, ଚାଉଳ ଦେଉଥିଲେ । ଫରେଷ୍ଟ ଡିପାର୍ଟମେଣ୍ଟର କର୍ମଚାରୀମାନଙ୍କୁ ଧାନ ଅମଳ ବେଳେ ହଳ ଗୋଟିକ ଧାନ ୨ ନଉତି ଦବାକୁ ପଡ଼େ । ମୁଗ, ବିରି ପ୍ରଭୃତି ଅମଳ ବେଳେ ବହୁତ ଜିନିଷ ଦିଆଯାଏ ଚାନ୍ଦା କରି ।

## ନିଆଁଲିଭା ଜଙ୍ଗଲ

ନୟାଗଡ଼ରେ ଥିବା ଜଙ୍ଗଲରେ କାଠବାଉଁଶ ପ୍ରାୟ ଜମି ପାଖକୁ ଲାଗି ରହିଥିଲା । ଜଙ୍ଗଲରେ ନିଆଁ ଲାଗିଲେ ରୁଲ୍ ଅନୁସାରେ ଘରୁ ଜଣେ ଲେଖାଏଁ ନିଆଁ ଲିଭାଇବା ପାଇଁ ଯାଆନ୍ତି । ଏସବୁକୁ ଫରେଷ୍ଟବାଲା କରାନ୍ତି । ମୁଁ ଥରେ ନିଆଁ ଲିଭାଇବା ପାଇଁ ଯାଇଥିଲି । ଉକ୍ତ ଦିନ ଜଙ୍ଗଲକୁ ପ୍ରାୟ ପାଞ୍ଚହଜାର ଗୃଷୀ ଲୋକ ଯାଇଥିଲେ । ସେତେବେଳକୁ ନାରଣ ମହାରଣା ବାହାଡ଼ଖୋଲାର ରେଞ୍ଜର ଥିଲେ । ଆମ୍ଭେମାନେ ମୁଣ୍ଡିଆରେ ନିଆଁ ଲିଭାଇ ଫେରିଲାବେଳକୁ ରାତ୍ର ଦଶଘଣ୍ଟା ହୋଇଗଲା । ଭଣ୍ଡାରୀବାରି ଉପରେ ମୁଣ୍ଡିଆରେ ରାତ୍ରିରେ ରାସ୍ତା ନ ପାଇ ବସିବସି ଜଙ୍ଗଲସାରା ବୁଲିବୁଲି ଅଥୟ ହେଲୁ । ଆଉ ବହୁତ ଲୋକ ଗୋଟିଏ ବାଉଁଶ ଖୁମ୍ବ ଚାରିପାଖ ଦୁଇ ଦୁଇଥର ବୁଲୁଥିଲୁ । ଶେଷରେ ଆମ୍ଭ ମୌଜାର ଧନୀ ବେହେରା ଆମ୍ଭମାନଙ୍କୁ ବାଟ କଢ଼େଇ ନେଲେ 'ଗୁନାମାଟି'କୁ । ସେତେବେଳକୁ ପୂର୍ବଦିଗରେ ସୂର୍ଯ୍ୟ ଉଦୟ ହେଲେଣି । ସେଠାରୁ ଘରକୁ ଆସିଲାବେଳକୁ ପୁଣି 'ଶୂଳିଆ' ଜଙ୍ଗଲରେ ନିଆଁ ଲାଗିଲା । ଆମକୁ ଡାକିବାରୁ ଆମ୍ଭ ଗ୍ରାମର ଲୋକମାନେ କହିଲେ, ରାତ୍ରସାରା ଅନିଦ୍ରା ରହିଛୁ । କାଲିଠାରୁ ଖାଇନାହୁଁ । ଆମେ ଯାଇପାରିବୁ ନାହିଁ । ଆମ୍ଭ ମୌଜାର ସର୍ବରାକାର ଆନନ୍ଦ ମହାପାତ୍ର ରିପୋର୍ଟ ଲେଖିଦେଲା । ଗ୍ରାମର ପ୍ରାୟ ସବୁ ଗୃଷୀଘର ଲୋକମାନେ ନୟାଗଡ଼ ଦଉଡ଼ିଲେ ଛ'ମାସ । ପ୍ରତ୍ୟେକ ଲୋକଙ୍କୁ ଟ ୨୦ ଲେଖାଏଁ ଜୋରିମାନା ହେଲା ।

## ରଳବ ଗଡ଼

ବାଉରି ଠାକୁରାଣୀ 'ରଳବ ଗଡ଼' ଶୂଳିଆ ପାହାଡ଼ ଉପରେ । ବର୍ଷକୁ ସେଠାରେ ପଣାସଂକ୍ରାନ୍ତି ବେଳକୁ ଏବଂ ଦଶହରା ବେଳକୁ ଛେଳି, ମେଣ୍ଢା, ପଣ୍ଡା ବଳି ପଡ଼ନ୍ତି । ପୁଣି 'ନରବଳି' ଦିଆଯାଏ । ପଣାସଂକ୍ରାନ୍ତି ବେଳକୁ ପ୍ରତ୍ୟେକ ଲୋକମାନେ ସନ୍ଧ୍ୟାରେ ପ୍ରାୟ ବାହାରକୁ ଯାଆନ୍ତି ନାହିଁ । ଗରମରେ ବି ତାଟି କବାଟ ଦେଇ ଘରେ ରହନ୍ତି । କେହି ଯଦି ନିଖୋଜ ହୋଇଯାଏ ତାଙ୍କୁ ଖୋଜିବା ପାଇଁ ମନା କରାଯାଏ । କାରଣ ସରକାରଙ୍କ ତରଫରୁ କୁଆଡ଼େ ଆଦେଶ ଥିଲା

ଯେ କେହି କାହାକୁ ଖୋଜିବେ ନାହିଁ । ବାରୁଣି ଠାକୁରାଣୀ ଗର୍ଭବତୀ ମହିଳାମାନଙ୍କର ରକ୍ତରେ କୁଆଡ଼େ ସନ୍ତୋଷ ହୁଅନ୍ତି । 'ରଳବଗଡ଼' ବାସିନ୍ଦାମାନେ ଏଥିପାଇଁ ବହୁତ ଜାଗିରିଜମି ପାଇଥିଲେ । ଅବଦୁଲ ସତାର ଖାଁ ନୟାଗଡ଼ର ବନ୍ଦୋବସ୍ତ ବେଳେ 'ରଳବଗଡ଼'କୁ ଯାଇ ଠାକୁରାଣୀଙ୍କୁ ନୟାଗଡ଼ ନେଇଗଲେ । ଉକ୍ତ ଗ୍ରାମକୁ ଭାଙ୍ଗିଦେଲେ । ସେମାନଙ୍କ ନାମରେ ଉକ୍ତ ଜାଗିରି ଜମି ସବୁ ରଇତ ସତ୍ୱ କରାଇଦେଲେ । ଲୋକମାନେ ସେମାନଙ୍କ ନିଜ ନିଜ ଯାଗାକୁ ଗ୍ଳଲିଗଲେ । ବସବାସ କରି ରହିଲେ । ହରିପୁର ଲିଙ୍ଗରାଜ ଖଟୁଆ, ଗୋବର୍ଦ୍ଧନ ଦଳବେହେରା ଜାମୁଝୋଲା ନୂଆଗାଁ ଏବଂ ଢୋଡ଼ାସାହିକୁ ରଳବଗଡ଼ରୁ ଗ୍ଳଲିଆସିଥିଲେ ।

## ନୟାଗଡ଼ର ଶିକ୍ଷା

ଅବଦୁଲ୍ ସତାର ଖାଁ ଜଣେ ସୁଦକ୍ଷ ଶାସକ ଥିଲେ । ତାଙ୍କର ଶାସନ କାଳରେ ଅପର ପ୍ରାଇମେରି ପର୍ଯ୍ୟନ୍ତ ବାଧ୍ୟତାମୂଳକ ଶିକ୍ଷା ଦିଆଯାଇଥିଲା । ସ୍କୁଲକୁ ପିଲା ନ ଗଲେ ମୁରବୀଙ୍କୁ ଦିନକୁ ପଇସାଟିଏ ଢୋରିମାନା ଦବାକୁ ପଡୁଥିଲା । ଛ'ମାସକୁ ଟ୫୦ ନଦ୍ଦେଲ୍ ତାକୁ ଜେଲଦଣ୍ଡ ଭୋଗିବାକୁ ପଡୁଥିଲା । ୧୯୩୨/୩୩ରେ ବାହାଡ଼ାଝୋଲାର ପ୍ରାଇମେରି ସ୍କୁଲ ଖୋଲିଲା । ଜଣେ ଶିକ୍ଷକ ପ୍ରାୟ ୩୩ ଜଣ ଛାତ୍ର ଥିଲେ । ସ୍ୱର୍ଗତ ଗଦାଧର ନନ୍ଦ ବାହାଡ଼ାଝୋଲାର ହେଡମାଷ୍ଟର ଥିଲେ । ଏକମାତ୍ର ଅପର ପ୍ରାଇମେରି ସ୍କୁଲ ଥିଲା । ସେତେବେଳେ ଓଡ଼ଗାଁ କୁରାଳରେ ଅପର ପ୍ରାଇମେରି ସ୍କୁଲ ନଥିଲା । ନୟାଗଡ଼ରେ ଏକମାତ୍ର ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା । ୧୯୪୭ ମସିହାରୁ ଦେଶ ସ୍ୱାଧୀନ ହେଲା, ମାତ୍ର ଶିକ୍ଷାକୁ ବାଧ୍ୟତାମୂଳକ କରାଯାଇଥିଲା । ସେତେବେଳେ ପ୍ରାଇମେରି ଶିକ୍ଷକମାନେ ମାସିକ ଦରମା ଟ୬ ପାଇ ଯେପରି ଶିକ୍ଷାଦାନ କରୁଥିଲେ ଆଜି ଅଧିକ ଟଙ୍କା ନେଇ ମଧ୍ୟ ତାହା ହୋଇପାରୁ ନାହିଁ । ବର୍ତ୍ତମାନ ମାଳଅଞ୍ଚଳରେ ସ୍କୁଲରେ ପିଲା ନାହାଁନ୍ତି କି ଘର ନାହିଁ । ସେତେବେଳେ ପିଲାମାନେ ଶିକ୍ଷକଙ୍କୁ ଡରୁଥିଲେ ।

## ଗର୍ଭପାତ କରାଇଲେ ଦଣ୍ଡ

ଗର୍ଭପାତ କଲେ ୩୦୨ ଦଫାରେ ଗିରଫ ହୋଇ ଜେଲଦଣ୍ଡ ଭୋଗିବାକୁ ପଡୁଥିଲା । ଏପରିକି ମର୍ଡର କେଶ୍ ହେଉଥିଲା । ଅପରାଧୀ କଠିନ ଦଣ୍ଡ ପାଉଥିଲେ ଏପରିକି ମୃତ୍ୟୁଦଣ୍ଡ ପାଉଥିଲେ । ଜମିବାଡ଼ିରେ ଯେଉଁ ଗଣ୍ଡଗୋଳ ହେଉଥିଲା, ଗ୍ରାମର ଭଦ୍ରଲୋକଙ୍କ ଦ୍ୱାରା ତା'ର ନିଷ୍ପତ୍ତି ହେଉଥିଲା । ପ୍ରାୟ ବହୁତ ଗ୍ରାମରେ ଭାଗବତ ଟୁଙ୍ଗି ଥିଲା । ଗ୍ରାମବାସୀମାନେ ସେଠାରେ ବସି ଗ୍ରାମର ଗଣ୍ଡଗୋଳ ତୁଟାଇ ଦେଉଥିଲେ । ସେତେବେଳେ ପୁଲିସ୍‌ର ଆଧିପତ୍ୟ ବହୁତ ଥିଲା । ସେମାନେ ଲୋକଙ୍କୁ ଭାରି ହଇରାଣ କରୁଥିଲେ ।

## ପଞ୍ଚାୟତ ସମିତି

ଆଜିକାଲି ଗ୍ରାମପଞ୍ଚାୟତରେ କୌଣସି ଗୋଳମାଳ ତୁଟୁ ନାହିଁ । ପ୍ରତ୍ୟେକ ଗ୍ରାମରେ ଦଳଗତ ମନୋଭାବ ଥିବାରୁ ଗ୍ରାମପଞ୍ଚାୟତ ପ୍ରତି ଲୋକଙ୍କର କୌଣସି ଆସ୍ଥା ନାହିଁ । 'ବନ୍ଦୀର ଆତ୍ମକଥା'ରେ ୰ ଗୋପବନ୍ଧୁ ଦାସ ଲେଖିଥିଲେ—

"ଗ୍ରାମେ ଗ୍ରାମେ ହେବ ଗ୍ରାମପଞ୍ଚାୟତ
ଗ୍ରାମ ଧନ ଆଉ ନ ଖାଇବେ ଭୂତ"

ଏବେ ଏହାର ବିପରୀତ ହୋଇଗଲା । ପଞ୍ଚାୟତର କାମ ହେଲା ଶଗଡ଼, ସାଇକେଲ ଟିକସ୍ ଆଦାୟ । ପଞ୍ଚାୟତ ସମିତିକୁ ଯେଉଁ ଟଙ୍କା ଆସେ, ତା'ର ଆଠ ଅଣାଠାରୁ ଅଧିକ କାମ ହୁଏ ନାହିଁ । ଅନେକ ଯାଗାରେ ଟଙ୍କାକର ଚୁରିଅଣା ବି କାମ ହେଉନାହିଁ । ସମସ୍ତେ ବାଣ୍ଟି ଖାଇନେଉଛନ୍ତି । ଗଡ଼ଜାତ ସମୟରେ ଗାଇ ମଇଁଷିଙ୍କ ପାଇଁ ଚରାକର ଆଦାୟ ହେଉଥିଲା । ଗାଇ ଗୋଟିକୁ ଚୁରିଅଣା, ମଇଁଷି ଗୋଟିକୁ ଆଠଅଣା ଦେବାକୁ ପଡୁଥିଲା ।

## ପାନ ନିଲାମ

ନୟାଗଡ଼ରେ 'ପାନ' ନିଲାମ ହେଲା । ତାକୁ ଜଣେ ବେପାରୀ ନିଲାମ ନେଲା । ଗୋଟିଏ ଲୋକ ପାନ ସାରା ନୟାଗଡ଼କୁ ଯୋଗାଉଥିଲା । ତା'ର ବିରୋଧରେ ଆନ୍ଦୋଳନ ଆରମ୍ଭ ହେଲା । 'ଓଡ଼ଗାଁ'ରେ ଉକ୍ତ ଆନ୍ଦୋଳନର ଦାୟିତ୍ୱ ନେଇଥିଲେ ନାରାୟଣ ନନ୍ଦ । ନୟାଗଡ଼ ପ୍ରଜାମଣ୍ଡଳର ପ୍ରତିଷ୍ଠାତା ସେ ମହାଶୟ ଅବଦାନ ରହିଛି । ସେ ସୂତା କାଟୁଥିଲେ, ଖଦଡ଼ ପିନ୍ଧୁଥିଲେ । 'ସାପ୍ତାହିକ ସମାଜ' ପଢୁଥିଲେ । ତା' ଆଗରୁ ନୟାଗଡ଼ରେ ସ୍ୱାଧୀନତା ଆନ୍ଦୋଳନ କେହି ଆରମ୍ଭ କରିନଥିଲେ । ୧୯୩୮ ମସିହା ସେପ୍‌ଟେମ୍ବର ୯ ତାରିଖ 'ଭାଗବତ ପୂର୍ଣ୍ଣମୀ' ଦିନ ପ୍ରଜାମଣ୍ଡଳ ଆରମ୍ଭ ହେଲା । ଉକ୍ତ ଦିନ ପ୍ରତ୍ୟେକ ଗ୍ରାମରୁ ଉଖୁଡ଼ା ଭାର, ବସାଦହି ଲୋକମାନେ ନେଇକରି ଯାଇଥିଲେ । ଉକ୍ତ ସଭାରେ ବାଞ୍ଛାନିଧି ସେନାପତି ସଭାପତି ହେଲେ । ନୟାଗଡ଼ ପ୍ରଜାମଣ୍ଡଳ ଗଠନ କରାଗଲା । ଉକ୍ତ ଦିନ ମିଥ୍ୟାରେ ପାନଚୋରା କେଶ୍‌ରେ ଜଜ୍‌ମେଣ୍ଟ କରାଗଲା, ପ୍ରତ୍ୟେକଙ୍କୁ ୧ ମାସ ଜେଲ୍ ହେଲା । ନାରାୟଣ ନନ୍ଦ, ରାମକୃଷ୍ଣ ଅଧିକାରୀ, କାଶିନାଥ ସାହୁ ଏମାନେଜେଲ୍ ଦଣ୍ଡ ପାଇଲେ । ଏଥିପାଇଁ ବୋଲଗଡ଼ ବଙ୍ଗଳା ପାଖରେ ତା ୨୯-୬-୩୮ ଦିନ ସାକ୍ଷ୍ୟ ଦିଆଗଲା । ନାରାୟଣ ନନ୍ଦ ଅନ୍ୟମାନଙ୍କ ସାଙ୍ଗରେ ମୁଁ ବି ଯାଇ ସାକ୍ଷ୍ୟ ଦେଇଥିଲି । ସେଠାରୁ ଆସିଲା ପରେ ମୋ ନାମରେ ମିଥ୍ୟାରେ କାଠ ଚୋରି କେସ୍ କରାଗଲା । କଣ୍ଟୁରି ପରିଡ଼ା, ଭାଇଗ ସାହୁ, ସନିଆ ପରିଡ଼ା, ଶିଖର ଗୋଛା ଉକ୍ତ କେଶ୍‌ରେ ପଡ଼ିଲେ । ଆମକୁ ଜେଲ୍ ଜୋରିମାନା ହେଲା । ମୋତେ ଜେଲ୍ ୧ ମାସ ୨୦ ଟଙ୍କା ଜୋରିମାନା ପଡ଼ିଲା । ନ ଦେଲେ ଦୁଇମାସ ଜେଲ୍ । ମୁଁ ଓ ଭାଇଗ ସାହୁ ଜେଲ୍‌ରେ ରହିଲୁ । ଦିନକୁ ସୋରିଷ ଘଣା ପାଞ୍ଚଗୋଟି ପକାଉଥିଲୁ । ମଝିରେ ଭାଇଗ ସାହୁଙ୍କୁ ଜ୍ୱର ହେଲା । ଥରେ ଘଣାରୁ ପଥର ପଡ଼ିଗଲା ମୋ ଗୋଡ଼ ଉପରେ । ପ୍ରଭୁଙ୍କ ଦୟାରୁ ରକ୍ଷା ପାଇଗଲି । ମୁଁ ବି ଜ୍ୱରରେ ପଡ଼ିଲି । ନୟାଗଡ଼ ଜେଲ୍‌ରେ ଥିବାବେଳେ ମୋର ବଡ଼ପୁଅ 'ଭାଗବତ' ଜନ୍ମ ହେବାର ଶୁଣିଥିଲି । ଫାଲ୍‌ଗୁନ ମାସରେ ତା'ର ଜନ୍ମ । ସେ ବଡ଼ ହୋଇ ପାଠ ପଢ଼ି ଦେଶ କାମରେ ଲାଗିଲା । ନୟାଗଡ଼ ବିଧାନସଭାକୁ ବହୁବାର ନିର୍ବାଚିତ ହୋଇ ଗଲା । ବିଜୁପଟ୍ଟନାୟକ ଓ ନବୀନ ପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳରେ ଦକ୍ଷ ମନ୍ତ୍ରୀଭାବେ ନାଁ କମେଇଥିଲା ।

## ନିର୍ବାଚନ ଓ କଂଗ୍ରେସ ମନ୍ତ୍ରୀମଣ୍ଡଳର ଇସ୍ତଫା

ସନ ୧୯୪୦/୪୧ ମସିହାରେ 'ଜୀ ଉଦୟଗିରି'ରେ ଉପନିର୍ବାଚନରେ ସ୍ୱର୍ଗୀୟ ଉମାଚରଣ ପଟ୍ଟନାୟକ ଜାତୀୟ କଂଗ୍ରେସ ପକ୍ଷରୁ ଓ କନିକା ଟିକାୟତ ସରକାର ଦଳ ସମର୍ଥନରେ ଠିଆ ହୋଇଥିଲେ । ମୁଁ ଟିକାବାଲିରେ ଥିଲି । ହରେକୃଷ୍ଣ ମହତାବ, ହରିହର ସ୍ୱାଇଁଙ୍କ ସହିତ ସେଠାରେ ପ୍ରଚାର କରୁଥିଲି । ବିନାୟକ ମିଶ୍ର, ନରସିଂହ ନନ୍ଦ ଫୁଲବାଣୀ ଉଦୟଗିରିରେ ଥିଲେ । ଉକ୍ତ ନିର୍ବାଚନରେ ଉମାଚରଣ ପଟ୍ଟନାୟକ ଜିତିଲେ । କନିକା ଟିକାୟତଙ୍କୁ ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ ପ୍ରମୁଖ ସାହାଯ୍ୟ କରୁଥିଲେ । କଂଗ୍ରେସର ନିଷ୍ପତ୍ତି ଅନୁସାରେ ବିଶ୍ୱନାଥ ଦାସ ମନ୍ତ୍ରୀ ପଦ ଛାଡ଼ିଦେଲେ ।

## ପ୍ରଜାମଣ୍ଡଳ ଅଫିସ୍

ଗଂଜାମ ଜିଲ୍ଲାର 'କୁମ୍ଭାପଡ଼ା'ଠାରେ ପ୍ରଜାମଣ୍ଡଳ ଅଫିସ୍ ଥିଲା । ୧୯୩୮ ମସିହାରେ ଉକ୍ତ ଅଫିସ୍ ଦାୟିତ୍ୱରେ କୁବେର ସାହୁ ଏବଂ ମୁଁ ଥିଲୁ । କୁବେର ସାହୁ ଗ୍ରାମକୁ ଆସିଲେ ମୁଁ ସେଠାରେ ରହିଲି । ନାରାୟଣ ନନ୍ଦ ପ୍ରଭୃତି ଜେଲ୍‌ରୁ ଆସିଲାପରେ ମୁଁ ସେଠାରେ କାଶିନାଥ ପାତ୍ରଙ୍କୁ ଅଫିସରେ ଥିବା ଚାଉଳ, ଡାଲି ଜିମା ଦେଇ ମୁଁ ଆସିଥିଲି । କେତେଜଣ କର୍ମୀଙ୍କ ସାଙ୍ଗରେ ସେଦିନ ରାତିରେ ରହିଲି ନାଠିଆପଲ୍ଲୀରେ । ସେଠାରେ ଉପବାସ ରହିଥିଲୁ । ଭାଗବତ ଘରେ ଶୋଇଥିଲୁ । ସକାଳୁ ଆସି କୁବେର ସାହୁଙ୍କୁ କାଗଜପତ୍ର ଓ ୩ ଟଙ୍କା ଦେଇ ଘରକୁ ଆସିଥିଲି । ୧୯୩୮ ମସିହାରେ ଗଡ଼ଜାତ ତଦନ୍ତ କମିଟି ବସିଥିଲା 'ବୋଲଗଡ଼'ଠାରେ । ହରେକୃଷ୍ଣ ମହତାବ ପ୍ରଭୃତି ଆସିଥିଲେମ୍ଣ ମୁଁ ସେଠାରୁ ଯାଇ ସାକ୍ଷ୍ୟ ଦେଇଥିଲି । ନାରାୟଣ ନନ୍ଦ, ବାଞ୍ଛାନିଧି ସେନାପତି, ଜନାର୍ଦ୍ଦନ ସୁବୁଦ୍ଧି, କସ୍ତୁରି ପରିଡ଼ା ପ୍ରମୁଖ ମଧ୍ୟ ଯାଇଥିଲେ । ତା ୨୯.୬.୩୮ ବୋଲଗଡ଼ ଡାକବଙ୍ଗଳାରେ ଏଇ ସାକ୍ଷ୍ୟ ପ୍ରଦାନ କରାଯାଇଥିଲା ।

## ନାରାୟଣ ନନ୍ଦ ଜେଲ୍‌ରୁ ଫେରିଲେ

୧୯୩୮ରେ ନାରାୟଣ ନନ୍ଦ, ରାମକୃଷ୍ଣ ଅଧିକାରୀ, କାଶିନାଥ ସାହୁ, ଭୁବନୀ ରାଇଗୁରୁ ପାଞ୍ଚଜଣ ପାନ କେଶ୍‌ରେ ଜେଲ୍ ୧ ମାସ ଲେଖାଏଁ ଜେଲ୍ ଯାଇ ଫେରିଲେ । ତାଙ୍କୁ ଦେଖିବାପାଇଁ ଜନାର୍ଦ୍ଦନ ସୁବୁଦ୍ଧି, ରାଧାକୃଷ୍ଣ ମହାପାତ୍ର, ଲକ୍ଷ୍ମଣ ସାହୁଙ୍କ ସାଙ୍ଗରେ ମୁଁ ବି ଯାଇଥିଲି । ଓଡ଼ଗାଁରେ ଜୋର୍ ବର୍ଷା ହେଲା । ସେଠାରୁ ଫେରିଲାବେଳେ 'କୁସିମୀ' ନଦୀରେ ବହୁତ ପାଣି ବଢ଼ିଥିଲା । ମସାବାରି ମୌଜାରେ ରାତ୍ରରେ ରହିଲୁ । କେଶବ ମହାରଣା ଆମମାନଙ୍କର ରୋଷେଇ ପାଇଁ ଚାଉଳ ଏବଂ ତରକାରୀ ପାଇଁ ଶଙ୍ଖସାରୁ ଦେଇଥିଲେ । ମୁଁ ରୋଷେଇ କରିଥିଲି ଭାତ ଏବଂ ସାରୁ ବେସର କରିଥିଲି । ସେଦିନ ବଡ଼ କଷ୍ଟରେ ଭାତ ଖାଇଥିଲୁ କାରଣ ଡାଲି ନଥିଲା । ତା'ପରଦିନ ନଦୀରେ ପାଣି ଅଣ୍ଟେଯାଏ । ସେ ମୌଜାର ଦୁଇଜଣ ଆମକୁ ପାରକରି ଦେଲେ, ସେଠାରୁ ଗ୍ରାମକୁ ଆସିଥିଲୁ ।

## ନୟାଗଡ଼ ପ୍ରଜାମଣ୍ଡଳର ନ୧୭ମ୍ବର ଦାବୀପତ୍ର

ପ୍ରଜାମଣ୍ଡଳର ନ୧୭ମ୍ବର ଦାବୀପତ୍ର ଛପାହେଲା । କୁମ୍ଭାପଡ଼ା ପ୍ରଜାମଣ୍ଡଳ ଅଫିସରୁ ଉକ୍ତ ଦାବୀପତ୍ର ବଣ୍ଟନ କରାଗଲା । ମୋର ଭାଗ ଥିଲା ନୂଆଗାଁ ଥାନା । ମୋତେ ୧୦୦ ଖଣ୍ଡରୁ ଅଧିକା ଦାବୀପତ୍ର ଦିଆଯାଇଥିଲା । ତାକୁ ବାଣ୍ଟିବା ପାଇଁ ମୋ ସାଙ୍ଗରେ ଚନ୍ଦ୍ରମଣି ସାହୁ, ଲଡୁ ସାହୁ, କାଇଁଆ ସାହୁ ଯାଇଥିଲେ । ପରଦିନ ସକାଳୁ ଦାବୀପତ୍ର ନେଇ ଆମେ ବାହାରିଲୁ ନୂଆଗାଁ ଥାନା ଅଞ୍ଚଳକୁ । ପାଣୁଚରଣ ସାହୁ ବାହାଡ଼ାଝୋଲା ସଆନ୍ତରାଙ୍କ ପୋଖରୀରୁ ଗାଧୋଇ ଆସୁଥିଲେ । ସେ ମୋଠାରୁ ଜବରଦସ୍ତ ସବୁ କାଗଜ ଛଡ଼ାଇ ନେଇଗଲା । ମୁଁ ଆଉ ଅନ୍ୟ ଦୁଇଜଣ ମଣ୍ଡପଠାରୁ ଫେରିଲୁ । ଗ୍ରାମରେ ଥିଲେ ଜନାର୍ଦ୍ଦନ ସୁବୁଦ୍ଧି, ଲକ୍ଷ୍ମଣ ସାହୁ, ରାଧାକୃଷ୍ଣ ମହାପାତ୍ର ପ୍ରଭୃତି ପଞ୍ଚୁଶଜଣ । ତାଙ୍କ ଦୁଆରକୁ ଯାଇ ଦୁଇ ଚାରି ଖଣ୍ଡ କାଗଜ ଦେଲୁ । ସେମାନଙ୍କ ନିକଟରେ ସବୁ କଥା ବର୍ଣ୍ଣନା କଲୁ । ଜନାର୍ଦ୍ଦନ ସୁବୁଦ୍ଧି ପାଣୁଚରଣ ସାହୁଙ୍କୁ କହିଲେ, ପିଲାଙ୍କଠାରୁ ଦାବୀପତ୍ର ଛଡ଼ାଇ ଆଣି କ'ଣ ଅନ୍ୟାୟ କରିନାହଁ । ଏପରି ଜବରଦସ୍ତ ଅନ୍ୟାୟ ଶାସନ କେତେ ଦିନ ଚାଲିବ ? ପ୍ରଭୁ ତୁମକୁ ଭଲବୁଦ୍ଧି ଦିଅନ୍ତୁ

କହି ଆମେ ସେଠାରୁ ଗ୍ଭଲିଆସିଥିଲୁ । ଚନ୍ଦ୍ରମଣି ସାହୁ ଓ ଲଡୁ ସାହୁଙ୍କ ପାଖରେ ଥିବା ଦାବୀପତ୍ର ନେଇ ମହୀପୁର ନୂଆଗାଁ ଅଞ୍ଚଳକୁ ଯିବାକୁ ବାହାରିଲୁ । ବାଟରେ ଗଲାବେଳେ ବନ୍ତଲା ଆରପାଖ ପେଟେଇ ଚଣ୍ଡୀଠାରେ ମହାବଳବାଘ ଦେଖିଲୁ । ମୁଁ ପଗ୍ଭରିଲି ଲଡୁଭାଇ କ'ଣଟାଏ ଗଲା ? ସେ କହିଲେ, ମହାବଳବାଘ ଗଲା । ସେଠାରୁ ସୁଧମାଳ ଜଙ୍ଗଲ ପ୍ରାୟ ଅଧ ମାଇଲ ବାଟ ଯାଇଛୁ ପାଟି ଶୁଭିଲା ବାଘ ଗାଈ ନେଇଗଲା । ସେତେବେଳକୁ ଆମ୍ଭେମାନେ ଚଣ୍ଡୀଝରିରେ ଥିବା ଜମି ପାଖକୁ ଗ୍ଭଲିଯାଇଥିଲୁ । ଆଡ଼ିପଡ଼ା ଗ୍ରାମ ଦେଇ ଗଲୁ ପାରାଦ୍ୱିପ ମୌଜାର ଲୋକମାନେ କହିଲେ, ଆଜି ତୁମେ ଆସିବା ଜଙ୍ଗଲ ରାସ୍ତାରେ ହଜାରି ନାହାକକୁ ବାଘ ନେଇଯାଇଥିଲା । ତା'ର ଭାଇ ବାହାଦୁର ନାହାକ ବାଘକୁ ଆଗରୁ ଜଗି କୁରାଢ଼ି ପସାରେ ବାଘର ମୁଣ୍ଡକୁ ବାଡ଼େଇଲା । ବାଘ ତାକୁ ଛାଡ଼ି ଦେବାରୁ ହଜାରିକୁ ଦଶପଲ୍ଲା ଡାକ୍ତରଖାନାକୁ ନେଇକି ଗଲେଣି । ତୁମ୍ଭମାନଙ୍କର ଭାଗ୍ୟ ଭଲ, ଯେହେତୁ ତୁମେ ନିରାପଦରେ ଏଠାର ପହଞ୍ଚିଗଲ । ଉକ୍ତଦିନ ରାତ୍ର ପାରାଦ୍ୱିପ ଶ୍ରୀ ରଘୁନାଥଙ୍କ ମଠରେ ରହିଲୁ । ଭୋରୁ ଗାଧୋଇ ନୂଆଗାଁ ଅଭିମୁଖେ ଗ୍ଭଲିଲୁ । ଘନଜଙ୍ଗଲ ମଧ୍ୟରେ ପ୍ରାୟ ୬ ମାଇଲ ରାସ୍ତାରେ ପଞ୍ଚୁପାଣ୍ଡବ ଠାକୁରାଣୀ । ସେଠାରୁ କିଛି ବିଭୁତି ମୁଣ୍ଡରେ ମାରି ଦାବୀପତ୍ର ଫାଇଲ୍ ଅଣ୍ଟା ଭିତରେ ରଖିଦେଇକି ଗଲୁ । କାରଣ ନୂଆଗାଁ ଥାନାରେ ଥିବା ଲିଙ୍ଗରାଜ ହଜାରି ଭାରି ଦୁଷ୍ଟ, ତେଣୁ ତାଙ୍କୁ ସମସ୍ତେ ଡରୁଥିଲେ । ମୋର ଆଗରୁ ସମ୍ପର୍କ ଥିଲା ରାହାସ ସାହୁ, ନିତ୍ୟାନନ୍ଦ ସାହୁଙ୍କ ସାଙ୍ଗରେ । ସେମାନଙ୍କ ଘର ଶିଖରଗୋଛାରେ । ସେଠାକୁ ଗଲୁ । ସେ ଆମ୍ଭମାନଙ୍କୁ ନେଇ ସୁଦାମ ବାରିକ କୋରଡ଼ାମୌଜାକୁ ଗଲେ । ସେଠାରେ ସୁଦାମ ବାରିକ, ଭିକାରୀ ପଣ୍ଡା ପ୍ରଭୃତି ପ୍ରାୟ ପଗ୍ଭଶ ଜଣ ଭାଗବତ ଘରେ ବସିଥିଲେ । ସେଠାରେ ପ୍ରଜାମଣ୍ଡଳ ବିଷୟରେ ମୁଁ ବୁଝାଇ ଦେଇଥିଲି । ସେମାନଙ୍କୁ କହିଥିଲି ପ୍ରତ୍ୟେକ ମୌଜାରେ ପ୍ରଜାମଣ୍ଡଳର ୧୭ ନମ୍ବର ଦାବୀପତ୍ର ବାଣ୍ଟିଦିଅ । କାଲି ବାହାଡ଼ାଝୋଲାକୁ ଯିବେ । ସେଠାରେ ସାଧାରଣ ସଭା ହେବ । ସାଙ୍ଗେ ସାଙ୍ଗେ ସୁଦାମ ବାରିକ ପ୍ରଭୃତି ପ୍ରାୟ ଦଶଜଣ ବାହାରି ଦାବୀପତ୍ର ନେଇଗଲେ । କେଉଁ କେଉଁ ଗ୍ରାମକୁ କିଏ ଯିବ, ତା'ର ତାଲିକା କରିଦେଇଥିଲୁ । ଆମ୍ଭେମାନେ ଚୁଡ଼ାଗୁଡ଼ ଖାଇ ଦିନବେଳା ରହିଲୁ । ୫ ଘଣ୍ଟାପରେ ଆମ ପାଇଁ ରୋଷେଇ ଭାଗବତ ବାରଣ୍ଡାରେ ହେଲା । ସେତେବେଳକୁ ଲିଙ୍ଗରାଜ ହଜାରି କନେଷ୍ଟବଲ ଏବଂ

ଦୁଇଜଣ ଚୌକିଦାର ଯାଇ ପହଞ୍ଚିଲେ । ସେତେବେଳକୁ କୁରୁଡ଼ା ମୌଜାରେ ବୁଲି ଆମର ଯାହା କରିବାର କାମ ସାରି ଦେଇଥିଲୁ । ଆମକୁ ପଚାରିଲେ ନାମ ଓ ଧାମ କ'ଣ । ଆମ୍ଭମାନେ କହିଲୁ ଘର ବାହାଡ଼ାଝୋଲା । ନାମ ନାରାୟଣ ବେହେରା, ଚନ୍ଦ୍ରମଣି ସାହୁ, ବଂଡୁ ସାହୁ । ସେଠାରୁ ଦାରୁଗା କହିଲେ କୋଠଘରକୁ ତୁମ୍ଭେମାନେ ଚାଲ । ମୁଁ କହିଲି, କୋଠଘରକୁ ଆମର ଯିବା ଦରକାର କ'ଣ ? ସେତେବେଳକୁ କୋରଡ଼ାମୌଜାରେ ପ୍ରାୟ ଶହେପରେ ଲୋକ ଜମା ହୋଇଗଲେଣି । ଦାରୁଗା କହିଲେ, ତୁମଠାରୁ କେତେ କ'ଣ ବୁଝିବି । ମୁଁ କହିଲି, ଏଠାରେ ବୁଝୁନାହଁ ଯାହା ବୁଝିବା ଦରକାର । ସେଠାରେ ଥିବା ବିଦ୍ୟାଧର ବାରିକ, କାଶିନାଥ ବାରିକଙ୍କୁ କହିଲେ, ଏମାନେ ପ୍ରଜାମଣ୍ଡଳ କର୍ମୀ । ତୁମେମାନେ ଏମାନଙ୍କୁ ଗ୍ରାମରୁ ବାହାର କରିଦିଅ । କାଶିନାଥ ବାରିକ କହିଲେ, ବର୍ତ୍ତମାନ ସନ୍ଧ୍ୟା ହେଲାଣି । ପିଲାମାନେ କୁଆଡ଼େ ଯିବେ । ତାଙ୍କୁ ଗ୍ରାମରୁ ବର୍ତ୍ତମାନ ବାହାର କରିବା କ'ଣ ଠିକ୍ ହେବ ? ସେମାନେ ଆଜି ଏଠାରେ ରହନ୍ତୁ । ଆପଣ ତାଙ୍କୁ ଜଗି ରହନ୍ତୁ । ତା'ପରେ ଦାରୁଗା ଚାଲିଗଲେ । ଜଣେ ସିପାହୀ, ଜଣେ ଚୌକିଦାର ଆମ୍ଭମାନଙ୍କୁ ଜଗିକରି ରହିଲେ । ସବୁ ବିଷୟ ଲୋକମାନଙ୍କୁ ବୁଝାଇ ଦେଇ ତାଙ୍କୁ କହିଲି, ତୁମ୍ଭେମାନେ କାଲି ସଭାକୁ ଆସିବ । ବାହାଡ଼ାଝୋଲା ହାଟରେ ସଭା ହେବ । ସେଠାରେ ରାତ୍ର ୩ ଘଣ୍ଟାରେ ଆସି ସାଥି ଦୁଇଜଣଙ୍କୁ ଉଠାଇଲି । ସିପାହୀ ଓ ଚୌକିଦାର ବାଟ ଜଗି ଦୁଆର ମୁହଁରେ ଶୋଇଲେ । ତାଙ୍କୁ ଡେଇଁ ଖୁବ୍ ସାବଧାନ ସହ ସେଠାରୁ ଖସି ପଳେଇ ଆସିଥିଲୁ । ଅନ୍ୟ ଦୁଆର ପାଖ ସଡ଼କରେ ସାବଧାନତାର ସହ ଚାଲି ଆସିଲୁ । ରାତ୍ର ଥିବାରୁ ଥାନାଠାରୁ ପ୍ରାୟ ଦୁଇ ମାଇଲ ଦୂରରେ ପଞ୍ଚୁପାଣ୍ଡବ ମନ୍ଦିରଠାରେ ଅପେକ୍ଷା କଲୁ । ରାତ୍ର ପାହିବାରେ ସେଠାରୁ ଆସିଲୁ । ବାହାଡ଼ାଝୋଲାରେ ପହଞ୍ଚି ସବୁ ବିଷୟ ପ୍ରଜାମଣ୍ଡଳ ସଭାପତିଙ୍କୁ ମୁଁ ଜଣେଇଦେଲି । ଉକ୍ତଦିନ ହାଟରେ ସଭା ହେଲା । ଉକ୍ତ ସଭାରେ କୁବେର ସାହୁଙ୍କୁ ସଭାପତିତ୍ୱ କରାଯାଇଥିଲା । ମୁଁ ଉକ୍ତ ସଭାରେ ଦାବୀପତ୍ର ମୋଠାରୁ ପାଣ୍ଡୁ ଚରଣ ସାହୁ ଛଡ଼ାଇ ନେଇଥିବା ବିଷୟ ବୁଝାଇଥିଲି । ଏବଂ ଚାଲିଥିବା ଅନ୍ୟାୟ ବେଠି, ପୁଲିସ୍‌ର ଅତ୍ୟାଚାର ପ୍ରଭୃତି ସଭାରେ କହିଲାବେଳେ ଲୋକମାନେ କରତାଳି ଦ୍ୱାରା ସମର୍ଥନ କରିଥିଲେ । ୧୯୩୮ରେ ମହିପୁର ଅଞ୍ଚଳକୁ ଯାଇଥିଲି । ମୋର ସାଥି କଣ୍ଟୁରି ପରିଡ଼ାଙ୍କ ଘରେ ରହିଥିଲି । ତା'ପରେ ଆନନ୍ଦ ସ୍ୱାଇଁଙ୍କ

ସହ ମୋର କଥାଭାଷା ହେଲା । ସେ ଥିଲେ ସର୍ବରାକାର । ସେ ରାଜି ହେଲେ । ପ୍ରଜାମଣ୍ଡଳରେ ଯୋଗଦେବା ପାଇଁ କହିଲେ । ତାଙ୍କୁ ନେଇ ସେ ଅଞ୍ଚଳରେ ପ୍ରଚାର କାମ ଉକ୍ତ ମୌଜାର ଗଦାଧର ସାହୁ ପ୍ରମୁଖ ବହୁତ କର୍ମୀ କରାଇଲେ । ସେ ଗ୍ରାମରେ ଗୋଟିଏ ପୁଲିସ୍ କେଶ୍ ନେଇ ସେମାନଙ୍କର ଘର କୋରଖ କରିବାକୁ ରିଜର୍ଭ ପୁଲିସ୍ ଫୋର୍ସ ଯାଇଥିଲେ । କୋରଖ କଲେ । ତା'ର ପ୍ରତିବାଦରେ ଉକ୍ତ ମୌଜାର ସ୍ତ୍ରୀ ପୁରୁଷ ମିଶି ପ୍ରାୟ ୫୦ ଜଣ ଥାଇ ରାଜାଙ୍କ ଉଆସ ଦୁଆରେ ଧାରଣା ଦେଇଥିଲେ । ମୁଁ ସେମାନଙ୍କର ନେତୃତ୍ୱ ନେଇଥିଲି । ଗଦାଧରର ମା' ଓଗେର ସେଥିରେ ଯାଇଥିଲେ । ରାଜା ବୁଝିବେ ବୋଲି କହିଲେ । ତାଙ୍କର କୋରଖ ଜିନିଷ ନିଲାମ ନକରି ଫେରେଇ ଦେବେ ଏହି ପ୍ରତିଶ୍ରୁତି ଦେଇଥିଲେ । ସେଠାରୁ ଆନନ୍ଦ ସ୍ୱାଇଁ ସୁଦର୍ଶନ ସ୍ୱାଇଁ ଗଦାଧର ସାହୁ ଓଗେର ସମସ୍ତେ ଗ୍ରାମକୁ ଆସିଥିଲେ । ସେଠାରୁ ନୂଆଗାଁ, କୋରଡ଼ା, ଶିଖରଗୋଛା, ମିନାଗାଡ଼ିଆ, ମହିତମା, ସୋରଣ, ଲୁଣିସାର, ଜଗନ୍ନାଥପ୍ରସାଦ ପ୍ରଭୃତି ଗ୍ରାମମାନଙ୍କରେ ବୁଲି ମୁଁ ପ୍ରଜାମଣ୍ଡଳର ପ୍ରଚାର କରିଥିଲି । ସେଦିନ ମହିପୁର ପଅରାପାଟଣା, ନିଳାଦ୍ରିପୁର, ଦୁରୁଦୁରା, ମଧୁବନ, ଗୁହାଳି ବୁଲି ରାତ୍ର ଖୁଣ୍ଟବନ୍ଧରେ ରହିଲୁ । ମୁଁ ଓ ଚନ୍ଦ୍ରମଣି ସାହୁ ଯାଇଥିଲୁ ଦୁରୁଦୁରାଠାରେ ସଭା ହେବ ଏବଂ ନାରାୟଣ ନନ୍ଦ ଉକ୍ତ ସଭାରେ ଭାଷଣ ଦେବେ କହି ପ୍ରଚାର କରିଥିଲୁ । ଖୁଣ୍ଟବନ୍ଧରେ ରାତ୍ରିରେ ରହି ରୋଷେଇ କଲୁ । ଦୀନବନ୍ଧୁ ରତ୍ନ ସେ ଗ୍ରାମକୁ ଆସିଲେ । ପଚାରିଲେ ଏମାନେ କିଏ ? ଗ୍ରାମର ଲୋକମାନେ କହିଲେ, ଏ ଦୁଇଜଣ ପ୍ରଜାମଣ୍ଡଳ କର୍ମୀ । କାଲି ଦୁରଦୁରା ହାଟରେ ସଭା ହେବ ପ୍ରଚାର କରିବାକୁ ଆସିଛନ୍ତି । ଦୀନବନ୍ଧୁ ତାଙ୍କୁ କହିଲେ, ଏମାନଙ୍କୁ ଗ୍ରାମରୁ ବାହାର କର । ଏହା ଦେବାନଙ୍କର ଆଦେଶ । ଆଜି ନୟାଗଡ଼ରେ ସବୁ ସର୍ବରାକାର ନୟାଗଡ଼ ଯାଇଥିଲେ, ସେଠାରେ ହୁକୁମ ହେଲା ଯେ ପ୍ରଜାମଣ୍ଡଳ କର୍ମୀଙ୍କୁ ଗ୍ରାମରେ ରଖିବ ନାହିଁ କିମ୍ବା ଖାଇବାକୁ ଦେବ ନାହିଁ । ଏଣୁ ଏମାନେ ଏଠାରୁ ଶିଘ୍ର ଯାଆନ୍ତୁ କହି ତାଙ୍କର ବାଙ୍କିବାଡ଼ିରେ ଚୁଲିରେ ବସିଥିବା ପିତଳ ତସଲା ନେଉଟେଇ ଦେଲା । ସେଠାରୁ ମୁଁ ଓ ଚନ୍ଦ୍ରମଣି ସାହୁ ଚାଲିଗଲୁ । ସେତେବେଳକୁ ରାତ୍ର ଦଶଘଣ୍ଟା ହେବ । ଆଖୁ ବିଲ ଦୁଇ ପାଖରେ ମୁଣ୍ଡେ ମୁଣ୍ଡେ ଆଖୁଗଛ ହୋଇଥାଏ । ଡାହୁକା ନଦୀରେ ପାଣି ପ୍ରାୟ ଅଣ୍ଟେ ଅଣ୍ଟେ ଥାଏ । ନଦୀ ପାରହୋଇ ଦୁରଦୁରା ଗଲୁ । ସେହି ଗ୍ରାମରେ ଚୁଡ଼ାଗୁଡ଼

ଖାଇବାକୁ ଦେଲେ । ତା' ପରଦିନ ସଭା ହେଲା ନାରାୟଣ ନନ୍ଦଙ୍କ ସଭାପତିତ୍ୱରେ । ସେଠାରେ ନରସିଂହ ନନ୍ଦ ଭାଷଣ ଦେଲେ । ମୁଁ ବି ଉକ୍ତ ସଭାରେ କିଛି ଭାଷଣ ଦେଲି । ନାରାୟଣ ନନ୍ଦ ସଭାରେ ଗଡ଼ଜାତ ଶାସନ ବିଷୟରେ ବୁଝାଇଥିଲେ । ତା' ପରଦିନ ବାଲଣ୍ଡାରେ ସଭା ହେଲା । ଗୁଆବାରି, ପାରାଦ୍ୱିପ, ବାଲଣ୍ଡା, ଅଭୟପୁର, କସିକିଆରି, ମସ୍‌ସାବାରି, ମାଇଛେଳିର ଗଡ଼ିସାହି ବୁଲି ପ୍ରଚାର କରୁଥିଲୁ । ସଭା ହେଲା ବାଲଣ୍ଡା ମୌଜାରେ । ନାରାୟଣ ନନ୍ଦଙ୍କ ସଭାପତିତ୍ୱରେ ସଭା କାମ ଚାଲିଲା । ସେଠାରେ ନରସିଂହ ନନ୍ଦ ଓ ମୁଁ ସବୁ ବିଷୟରେ ବୁଝାଇଥିଲୁ । ମୁଁ ଜଙ୍ଗଲ କଟକଣା ବେଠି, ସାଧାରଣ କଥାରେ ପୁଲିସ୍‌ର ଅତ୍ୟାଚାର ଓ ଶେଷରେ ନନ୍ଦ ମହାଶୟ ସବୁ ବୁଝାଇଥିଲେ । ପରଦିନ ସଭା ହେଲା ପଥରା ପାଟଣାରେ । ନୂଆଗାଁଠାରେ ଡାକବଙ୍ଗଳା ସାମନା କଇଁଆମୂଳେ ସଭା ହେଲା, ସଭାର ସଭାପତି ସୁଦାମ ଚରଣ ବାରିକ । ଉକ୍ତ ସଭାରେ ମୁଁ ଏବଂ ସାଥି କୁବେର ସାହୁ ଯାଇଥିଲୁ । ସେଠାରେ ଥିବା ଦାରୁଗା ଲିଙ୍ଗରାଜ ହଜାରି, କନେଷ୍ଟବଲ ଦୁଇଜଣ ଏବଂ ନାରାୟଣ ପଟ୍ଟନାୟକ ସଭାରେ ପ୍ରତିବାଦ କରି କହିଲେ, ଛେଳି ଗୋଡ଼ରେ କ'ଣ ଧାନ ଅମଳ ହେବ !! ଏମାନେ କ'ଣ କରିବେ ! ରାଜାଙ୍କର ଶାସନ ଭଲ । ସଭାରେ ବିଶୃଙ୍ଖଳା ସୃଷ୍ଟି କଲେ ମଧ୍ୟ ଲୋକେ ନିରବରେ ଶୁଣୁଥିଲେ । ନାରଣ ପଟ୍ଟନାୟକ ସେତେବେଳକୁ ଖାଲମଡ଼ାର ଅସୁଲକାରୀ ଥିଲେ । ଆମର ସଭାରେ ବହୁତ ଲୋକ ଜମା ହୋଇଥିଲେ । ମୁଁ ସେଠାରେ ରାଜାଙ୍କ ଅନ୍ୟାୟ ଶାସନ ବିରୁଦ୍ଧରେ ବୁଝେଇଥିଲି । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାରତ ସ୍ୱାଧୀନତା ଆଣିବ । ଏମାନେ ଯେତେ ପ୍ରତିବାଦ କଲେ ବି ଏ ଶାସନ ଆଉ ରହିବନି ଇତ୍ୟାଦି କହି ଜନତାକୁ ଉଦ୍‌ବୋଧନ ଦେଇଥିଲେ । ସାଥି କୁବେର ସାହୁ ବି ବୁଝେଇଥିଲେ । ତା'ପରେ କୁରୋଡ଼ା, ମଇତମା, ଶିଖରଗୋଛା, ଲୁଣିସରା, ସୋରଡ଼ା, ଜଗନ୍ନାଥପ୍ରସାଦ, କୃଷ୍ଣପ୍ରସାଦ ମୌଜାମାନଙ୍କରେ ଏମାନଙ୍କୁ ପ୍ରଜାମଣ୍ଡଳର ମେମ୍ବର କରେଇଥିଲି । ସେମାନେ ହେଉଛନ୍ତି – ସୁଦାମ ବାରିକ, ନିତ୍ୟାନନ୍ଦ ସାହୁ, ସନିଆ ପରିଡ଼ା, ପରିକ୍ଷିତ ବେହେରା, ଭିକାରୀ ସାହୁ ଓ ଜଗନ୍ନାଥ ପ୍ରସାଦର ପୁରୁଷୋତ୍ତମ ମିଶ୍ର । ସେମାନଙ୍କୁ ନେଇ ପ୍ରତ୍ୟେକ ମୌଜାରେ ସଭା କରିଥିଲି । ପ୍ରତ୍ୟେକ ଗ୍ରାମରେ ଗ୍ରାମ୍ୟ କମିଟି

ଗଠନ କରିଥିଲି । ଉକ୍ତ କମିଟିରେ ଗ୍ରାମର ପ୍ରତ୍ୟେକ ମାଲିମକଦ୍ଦମା ବିଗ୍ଚର କରି ତୁଟାଇଥିଲୁ । ପ୍ରତ୍ୟେକ ଗ୍ରାମରେ ଡଣ୍ଡା ରାସ୍ତା କରାଇଥିଲି । ମୁଁ ନିଜେ କୋଡ଼ି ଧରି ହାଣୁଥିଲି । କାରଣ ମୌଜାରେ ମୁଁ ୧୯୩୮ ମସିହାଠାରୁ ୧୯୪୬ ମସିହା ପର୍ଯ୍ୟନ୍ତ ରହିଥିଲି । ମୋର ଖାଇବାର ସମସ୍ତ ସୁବିଧା କରିଥିଲେ କାଶିନାଥ ବାରିକ । ତାଙ୍କର ସ୍ତ୍ରୀ ସବୁଦିନେ ନିଜର ମା' ପରି ଖାଇବାକୁ ଦେଉଥିଲେ । ମୁଁ ତାଙ୍କୁ ମା' ବୋଲି ଡାକୁଥିଲି । କାରଣ ସେ ମୋର ସଙ୍ଗାତ ମା' ଥିଲେ । ତାଙ୍କର ପୁଅ ନିରଞ୍ଜନ ବାରିକ ମୋର ଭାଇ ରାମଚ଼ନ୍ଦ୍ର ସହ ସଙ୍ଗାତ ବନ୍ଧୁ କରିଥିଲେ । ନିରଞ୍ଜନ ଦୁଇବନ୍ଧୁଙ୍କୁ ସାହାଯ୍ୟ କରୁଥିଲେ । ମୋର କୋରଡ଼ା ମୌଜା ଥିଲା ନିଜ ଘର ପରି । ପ୍ରତ୍ୟେକ ଭାଇଭଉଣୀମାନେ ମୋତେ ଅନ୍ତରର ସହ ଭଲ ପାଉଥିଲେ । ମିନାଗଡ଼ିଆ ଗଲେ ପଲଉ ବେହେରାଙ୍କ ଘରେ ରହୁଥାଏ । ସେ ମହାଶୟ ମୋତେ ସାହାଯ୍ୟ କରୁଥିଲେ । ଭିକାରୀ ସାହୁ ଏବଂ ଗଦାଧର ବେହେରା ପାର୍ଟି କର୍ମୀ ଥିଲେ ।

## ପାଞ୍ଚ ଆଇନ ଜାରି

ପାଞ୍ଚ ଆଇନ ଜାରି ବାହାଡ଼ାଝୋଲା ହାଟରେ ପ୍ରଜାମଣ୍ଡଳର ପ୍ରଗ୍ଚରପତ୍ର ବାଣ୍ଟିଲାବେଳେ ଭୁବୁନି ଅଧିକାରୀ ଦାଶରଥି ପ୍ରଧାନଙ୍କୁ ଗିରଫ କରି ପୁଲିସ୍ ଫାଣ୍ଡି ହାଜତକୁ ନେଇଗଲା । ତା'ରି ପ୍ରତିବାଦ କରି ହାଟରେ ପ୍ରଗ୍ଚର ହେଲା । ତା'ପରଦିନ ପ୍ରାୟ ୧ ହଜାର ଲୋକ ନେଇ ତାଙ୍କ ସାଙ୍ଗରେ ଗଲୁ । ନୟାଗଡ଼ ପୁଲିସ୍ ଲୋକ ପଠାଇ କହିଲା, ବହୁତ ଲୋକ ସାଙ୍ଗରେ ଆସୁଛନ୍ତି । ନୟାଗଡ଼ରୁ ପୁଲିସ୍ ଫେରି ସୁଣ୍ଡିଝୋଲାଠାରୁ ଦାଶରଥି ଓ ଭୁବୁନିଙ୍କୁ ଛାଡ଼ିଦେଲା । ଉକ୍ତଦିନ ଫେରିଆସି ବାହାଡ଼ାଝୋଲାରେ ସମସ୍ତ ଲୋକଙ୍କ ଖାଇବା ପାଇଁ ବନ୍ଦୋବସ୍ତ କରିଥିଲୁ । ତା'ପରଦିନ ବାହାଡ଼ାଝୋଲାଠାରୁ ଯାଇ ପଥରାପାଟଣାରେ ଦିନେ ରହିଲୁ । ପଥରାପାଟଣା ପାଟୁଳିସାହିର ଲୋକମାନେ ଖାଇବା ବ୍ୟବସ୍ଥା କରିଥିଲେ । ରାତ୍ରିରେ ରହିଲୁ । ଜେମାଦେଇପୁର ସଡ଼କ ପାଖ କଇଁଆ ଗଛ ମୂଳରେ ଆମେ ଶୋଇଲୁ । ମୋତେ ବାଞ୍ଛାନିଧି ସେନାପତି (ପ୍ରଜାମଣ୍ଡଳ ସଭାପତି)

କମଳ ଘୋଡ଼େଇ ଦେଇଥିଲେ । ତା'ପରଦିନ ଗୋବିନ୍ଦପୁର ପାଖ ମେଘମାଳ ତୋଟାରେ ସଭା ହେଲା । ସେଠାରେ ଖାଇବାର ବ୍ୟବସ୍ଥା ହୋଇଥିଲା । ସେତେବେଳକୁ ଆମର ସଂଖ୍ୟା ୧ ହଜାର ହେବ । ସେଠାରେ ସଭାରେ ପ୍ରାୟ ପାଞ୍ଚ ହଜାର ଲୋକ ହୋଇଥିଲେ । ସେଠାରୁ ବାହାରି ରାତ୍ରିରେ ରହିଲୁ ଗୁଡୁପାଙ୍ଗି ନଦୀ ପାଖ ତୋଟାରେ । ସମସ୍ତ ଲୋକଙ୍କୁ ଖାଇବା ପାଇଁ ଲୋକମାନେ ବ୍ୟବସ୍ଥା କରିଥିଲେ । ଅନେକ ଆଦିବାସୀ ଲୋକଙ୍କର ଟାଙ୍ଗିଆବେଣ୍ଟ ସଂଗ୍ରହ କରି ପୋଡ଼ି ଦେଇଥିଲୁ । କାରଣ ସେମାନେ କାଳେ ହିଂସା ଆଚରଣ କରିବେ । ଉକ୍ତ ଦଳର ମୁଖ୍ୟ ଥିଲେ ପ୍ରଜାମଣ୍ଡଳ ସଭାପତି ବାଞ୍ଛାନିଧି ସେନାପତି ଏବଂ କର୍ମୀ ଜନାର୍ଦ୍ଦନ ସୁବୁଦ୍ଧି, ମୁଁ ନିଜେ, ରାମଚନ୍ଦ୍ର ସାହୁ, ରାଧାକୃଷ୍ଣ ମହାପାତ୍ର, ମାଧବ ସେଠି, ଦଣ୍ଡୁ ମହାପାତ୍ର, ହାଡିଆ ଶିଳା, କ୍ଷେତ୍ରବାସୀ ସୁବୁଦ୍ଧି, ମୁଳିଆ ପ୍ରଧାନ, କୁଣିଆ ଜାନି ପ୍ରଭୃତି ପ୍ରାୟ ଦୁଇ ଶହ ବନ୍ଧୁ ଥିଲେ । ଉକ୍ତ ୫ ଆଇନ ଆନ୍ଦୋଳନ ବାହାଡ଼ାଖୋଲାରୁ ବାହାରିଥିଲା । ସେଠାରୁ ରାତ୍ରିରେ ଛିପାମାଳ ଦେଇଗଲୁ । ରାତ୍ରିରେ କନ୍ଦପୋଲିରେ ପାଳ ପାରି ଶୋଇଲୁ । ତା'ପରଦିନ ବାହାରିଲୁ ମହିତମା ମୌଜାକୁ । ମୁଁ ପ୍ରଥମେ ମହିତମା ମୌଜାରେ ପହଞ୍ଚିଥିଲି । ସେଠାରେ ଆଗରୁ ଥିଲେ ଦୁଇଜଣ ସିପାହୀ ଏବଂ ଜମାଦାର । ସେଠାରେ ଖଡ଼ି ଷଡ଼ଙ୍ଗୀ ମୋତେ ପଗ୍ଚରିଲେ ପାଞ୍ଚ ଆଇନ ଜାରି ହୋଇଛି । ଆମେ କହିଲୁ, ତୁମେ ଜାଣିନ ଆମେ ଜାଣିଛୁ ସେ ଆଇନକୁ ଗୁରୁବାରଠାରୁ ଭାଙ୍ଗି ଦେଇଛୁ । ସେ ଆଇନ ଆଉ କାମ କରୁନାହିଁ । ଉକ୍ତଦିନ କୋରଡ଼ା ମୌଜାରେ ଦିନରେ ସଭା ହେଲା । ଖାଇଲା ବେଳକୁ ସନ୍ଧ୍ୟା ହୋଇଗଲା । ପ୍ରାୟ ତିନି ହଜାର ଲୋକ ଖାଇଥିଲେ । କୋରଡ଼ା ମୌଜାର ପ୍ରତ୍ୟେକ ଲୋକ ଆଖପାଖ ମୌଜାର ଲୋକମାନେ ଡାଲି ଗ୍ଚଉଳ ଆଣି ରୋଷେଇ କରିଥିଲେ । ସଭା ଉକ୍ତ ତୋଟାରେ ହୋଇଥିଲା । ଗ୍ରାମର ପଶ୍ଚିମପାଖ, ତୋଟାମୁଣ୍ଡିଆ ପାଖ ବିଦ୍ୟାଧର ବାରିକ, କାଶିନାଥ ବାରିକ, ସୁଦାମ ବାରିକ, ଭିକାରୀ ଚରଣ ପଣ୍ଡା, ଧୋବେଇ, ଆନନ୍ଦ ସାହୁ, ଗାହାସ ସାହୁ, ସନେଇ ପରିଡ଼ା, ପଳଉ ବେହେରା, ପରୀକ୍ଷିତ ବେହେରା ଏମାନେ ସାହାଯ୍ୟ କରିଥିଲେ । କଣ୍ଟୁରି ପରିଡ଼ା ଥୁଆବାରି ସାଙ୍ଗରେ ଥିଲେ । ସେଠାରୁ ତା'ପରଦିନ ନିଜ ନିଜ ଗ୍ରାମକୁ ଫେରି ଆସିଥିଲୁ ।

## ୧୯୪୧

ମୋତେ ବସନ୍ତ ହେଲା, ମୁଁ ବହୁତ କଷ୍ଟ ପାଇଲି । ମୁଁ ଜାଣିପାରୁ ନଥିଲି ମୋର ବସନ୍ତ ବେଳେ ଭାଗବତକୁ ବି ବସନ୍ତ ହେଲା, ମୋର ବସନ୍ତ ଚିକିତ୍ସା ପାଇଁ ଭୁବୁନି ସାହୁ କୋମଣ୍ଡରୁ ଆସିଥିଲେ । ତାଙ୍କୁ ଡକାଇବା ପାଇଁ ମୋର ବାପା ଏଠାରୁ ଯାଇଥିଲେ । ବିନାୟକ ମିଶ୍ର ମୋର ସଙ୍ଗାତ । ସାଙ୍ଗରେ କୁରାଳଠାରୁ ଆସି ମୋତେ ଦେଖି କହିଲେ, ବର୍ତ୍ତମାନ ଏ ଅବସ୍ଥାରେ ମୁଁ କିଛି କରିପାରିବି ନାହିଁ । ତୁମେ ନିମ୍ନଲିଖିତ ଜିନିଷ ଆଣ, ବର ଓହଳ, କଅଁଳ ଆମ୍ବପତ୍ର, କଳମଶାଗ, ମୁଗ ମାଠିଆରେ ପାଣିଦେଇ ମୁହଁ ବନ୍ଦକରି ସିଝା ହେଲାପରେ ଚଦର ଘୋଡ଼େଇ ସେଇ ବାମ୍ଫ ମୋ ଦେହରେ ଦେଲି । ଟଭାରସ ଏବଂ ଆମ୍ବିଳି ତୋରାଣି ଦେହସାରା ଛପାଇ ଦିଆଗଲା । ଏହା ଦି୧୨ ଘଣ୍ଟା ମଧ୍ୟରେ କରାଗଲା । ୩ ଘଣ୍ଟାରେ ବୈଦ୍ୟ ମହାଶୟ ଦେଖି କହିଲେ, ଏଥର ଭଲ ହୋଇଯିବ । ବସନ୍ତ ପାଣି ଭରି ହୋଇଗଲା । ଘରେ ସମସ୍ତଙ୍କୁ କଲରାପତ୍ରରସ, ହଳଦୀଗୁଣ୍ଡ ୩ ଦିନ ଖାଇବାକୁ ଦେଲେ । ମୋର ବସନ୍ତ ପ୍ରାୟ ୧ ମାସ ହୋଇଗଲା । ଦେହ ଏପରି ଘା ହୋଇଥିଲା ଯେ ଘସି ପାଉଁଶ ଦୁଇବୋଝ ବିଛେଇ ଲୁଗା ଉପରେ ମୋତେ ଶୁଆନ୍ତି । କିନ୍ତୁ ଆମ ଘରେ ବେଶି ଖଦଡ଼ ଲୁଗା ଥିବାରୁ ସରୁ ଲୁଗା ଖଦଡ଼ ଲୁଗା ଉପରେ ପକାଇବା ପାଇଁ ମୋତେ ପୂଜ୍ୟ ମହେଶ୍ୱର ଅତିବୁଧିଙ୍କ ମା' ମୋ ପାଇଁ ଦୁଇଟା ସରୁ ଲୁଗା ପଠେଇ ଦେଇଥିଲେ ଏବଂ ବାରମ୍ବାର ଦେଖିବାକୁ ଆସନ୍ତି । ମୋତେ ଦେଖିବା ପାଇଁ ଲକ୍ଷ୍ମଣ ସାହୁ, ସଦାଶିବ ପୃଷ୍ଟି, ରାଧାକୃଷ୍ଣ ମହାପାତ୍ର, ଚନ୍ଦ୍ରମଣି ସାହୁ ଏମାନେ ବାରମ୍ବାର ଆସୁଥିଲେ । ଏହା ବ୍ୟତୀତ ଅନେକ ସାଙ୍ଗସାଥି ଦେଖିବା ପାଇଁ ଆସିଥିଲେ । ମୁଁ କୁଆଡ଼େ ପୁଣି ଜନ୍ମ ପାଇଲି ବୋଲି ସମସ୍ତେ କହିଲେ । ମୋର ଗୁରୁ ବିଶ୍ୱନାଥ ବାବାଙ୍କ ଆଶୀର୍ବାଦରେ ମହିମା ସ୍ୱାମୀ ମୋତେ ରକ୍ଷା କରିଦେଲେ ।

## ୧୯୪୨

ତା୧୪.୫.୪୨ରେ ମୋତେ ଗିରଫ କରି ନିଆଗଲା । ଦଫା ରାଜ୍ୟରକ୍ଷା ଆଇନରେ ଦ ୧୨୦ ବାହାଡ଼ାଝୋଲାରେ, ସିପାହୀ ରଘୁନାଥ ପଟ୍ଟନାୟକ

ହାଜତରେ ମୋ ଉପରେ ଢୋତାପିଛି କୁଦୁଥିଲା । ବିଧାମାରି ତା'ର ଘୋଡାରେ କୁଦିଦେଲା ମୁଁ ସେଥିରେ ଅଚେତ ହୋଇପଡ଼ିଲି । ଏସବୁ ରଘୁନାଥ ବେହେରା ଦେଖୁଥିଲେ । ସୁଦର୍ଶନ ସ୍ୱାଇଁ ବି ଏ କେଶ୍‌ରେ ପଡିଥିଲା । ଡିମ୍ବିରିପଲ୍ଲିର ଜଣେ ଲୋକଙ୍କୁ ବେରୁଆବନ୍ଧକୁ ଆମ ପାଖକୁ ପୁଲିସ ପଠାଇଥିଲା । ଗିରଫ ପୂର୍ବରୁ ସେ କହିଲା, ମୁଁ ଆସାମ ଯାଇଥିଲି ରାସ୍ତାକାମ କରିବା ପାଇଁ । ବର୍ତ୍ତମାନ ମୁଁ ଯିବାକୁ ଚାହୁଁନି । ପୁଲିସ ମୋତେ ବାଧ୍ୟ କରୁଛି ଆସାମ ଯିବାପାଇଁ । ମୁଁ ଏ ବିଷୟରେ ଚିଠି ଲେଖିଲି ପ୍ରଜାମଣ୍ଡଳର ପ୍ରତିଷ୍ଠାତା ନାରାୟଣ ନନ୍ଦଙ୍କ ନିକଟକୁ । ଏଥିରେ ସୁଦର୍ଶନ ସ୍ୱାଇଁ ରଘୁନାଥ ବେହେରା ସ୍ୱାକ୍ଷର କରିଥିଲେ । ଉକ୍ତ ଚିଠି ସେ ଲୋକ ନାରାୟଣ ନନ୍ଦକୁ ନ ଦେଇ ଘନବାବୁ ଜମାଦାରକୁ ଦେଲା । ଏପରି ପ୍ରମାଣ ଥିବା ଚିଠି ପାଇ କମାଣ୍ଡ ଘନବାବୁ ଜମାଦାର ମୋତେ ଗିରଫ କରିବା ପ୍ରମାଣ ପାଇଗଲେ । କହିଲେ, ଉକ୍ତ କେଶ୍‌ରେ ଆଉ ସାକ୍ଷ୍ୟ ପ୍ରମାଣ ଦରକାର ନାହିଁ । ମୋତେ ଗିରଫ କରିବା ପାଇଁ ପୁଲିସ ଚାହୁଁଥିଲା । କାରଣ ମୁଁ ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଭାଗନେଇ କାମ କରୁଥିଲି । ତେଣୁ ନୟାଗଡ଼ ରାଜା ଶାସନ ତାହାହିଁ ଚାହୁଁଥିଲା । ମୋତେ ମେ ମାସ ୧୪ ତାରିଖରେ ଗିରଫ କରି ୧୫ ତାରିଖରେ କୋର୍ଟରେ ହାଜର କଲେ ଏବଂ ୨୧.୫ ତାରିଖରେ ୧ ବର୍ଷ ଜେଲ୍ ହୋଇଗଲା ।ମାଡ଼ ଏବଂ ଜେଲ୍ ଗଲେ ଅନ୍ୟମାନେ ଡରିକରି ଦବିଯିବେ ବୋଲି ସରକାର ଚାହୁଁଥିଲେ । ଏହାପୂର୍ବରୁ ଦୁଇଥର ଜେଲ୍ ଭୋଗିଥିଲି । ଜେଲକୁ ମୁଁ ଡରୁନଥିଲି କିମ୍ବା ପୁଲିସକୁ ଖାତିର କରୁନଥିଲି । ମୁଁ ବୁଝାଉଥିଲି ଏ ଦେଶର ମାଲିକ ଆମ୍ଭେମାନେ ଆମ୍ଭର ସେବା କରିବା ପାଇଁ ଚୌକିଦାରଠାରୁ ଦେବାନ ପର୍ଯ୍ୟନ୍ତ ଆମ୍ଭମାନଙ୍କର କାମ କରିବା ପାଇଁ ଚାକିରି କରିଛନ୍ତି । ତେଣୁ ସେମାନେ ଭୁଲ ବୁଝିଛନ୍ତି । ତାଙ୍କର ଯେଉଁମାନେ ପ୍ରଭୁ ତାଙ୍କୁ ଚାକର ପରି ବ୍ୟବହାର କରୁଛନ୍ତି । ଆମ୍ଭମାନଙ୍କୁ ରାଜାମାନେ ଶାସନ କରୁଛନ୍ତି । ରାଜାମାନଙ୍କୁ ଶାସନ କରନ୍ତି ଇଂରେଜମାନେ । ରାଜାମାନଙ୍କର ପଲିଟିକାଲ ଏଜେଣ୍ଟ ଅଫିସ ସମ୍ବଲପୁରରେ । ଆମ୍ଭେମାନେ ଦୁଇଟି ଶାସନ ତଳେ ଥିଲୁ । ରାଜା ଏବଂ ପଲିଟିକାଲ ଏଜେଣ୍ଟ ମୋତେ ତା ୧୫.୫.୪୨ ଗିରଫରେ ହାତକଡ଼ି ଦେଇ ବାହାଡ଼ାଝୋଲାଠାରୁ ଚଲାଇ ଚଲାଇ ନେଇଥିଲେ ନୟାଗଡ଼ ରଘୁନାଥ ପଟ୍ଟନାୟକ ଆଉ ଜଣେ କନେଷ୍ଟବଳ । ମୁଁ ଚାଲିପାରି ନଥିଲି । କାରଣ ପୂର୍ବଦିନ ମୋତେ ହାଜତରେ

ମାଡ଼ ହୋଇଥିଲା । ମୋତେ ୨୧.୫.୪୨ ଦେଶରକ୍ଷା ଦଫା ୧୨୦ରେ ଏକବର୍ଷ ସଶ୍ରମ କାରାଦଣ୍ଡ ଆଦେଶହେଲା କୋର୍ଟରେ । ମୁଁ ଏବଂ ସୁଦର୍ଶନ ସ୍ୱାଇଁ ଜେଲ୍‌ରେ ରହିଲୁ । ରଘୁନାଥ ବେହେରାଙ୍କୁ ମେସଲସଜା ହୋଇଥିଲା । ଜେଲ୍‌ରେ ମାଟିବୋହି ଶାବଳ ମାରିବା, ମାଟି ମୁଣ୍ଡରେ ବୁହାଇବା କାମ ହେଉଥିଲା । ଗ୍ରେରିକରି ଜେଲ୍‌ରେ ଥିବା ନବା ନାହାକ, କାର୍ତ୍ତିକ ନାହାକ ପ୍ରଭୃତିଙ୍କ ସାଙ୍ଗରେ କାମ କରୁଥିଲି । ବର୍ତ୍ତମାନର ଷ୍ଟେଟବ୍ୟାଙ୍କ ଥିବା ଜାଗାରୁ ମାଟି ନେଇ ପାଖରେ ଥିବା ଘରୋଇ ବସଷ୍ଟାଣ୍ଡରେ ଥିବା ଖାଲିଜାଗାରେ ମାଟି ପକାଉଥିଲି । ୧୯୪୦ ମସିହାରେ ନୟାଗଡ଼ରେ ଥିବା ପାର୍କରେ ମାଟିଖୋଳା ଆରମ୍ଭ କରିଥିଲୁ । ମୁଁ ଓ ମୋ ସାଥି ଭାଇଗ ସାହୁ ଜେଲ୍‌ରେ ରହିବାରେ ଏକ ମାସ ପରେ ପଲିଟିକାଲ ଏଜେଣ୍ଟ ଆସିଥିଲେ । ସେ ଦିନ ସୁଦର୍ଶନ ସ୍ୱାଇଁ ଦେଖିଲେ ବାର ବୟସର ପିଲା ତାଙ୍କୁ ପାଞ୍ଚବେତ ସଜାଦେଇ ଛାଡ଼ିବା ପାଇଁ ତା'ର ଫାଇଲରେ ଲେଖିଦେଲେ । ମୁଁ ଏକଲା ରହିଲି ଜେଲ୍‌ରେ । ଉକ୍ତ ବର୍ଷର ଜୁଲାଇ ଅଗଷ୍ଟ ବେଳକୁ ପ୍ରଜାମଣ୍ଡଳର ମୋର ସାଙ୍ଗମାନେ ଜେଲ୍‌ରେ ମିଶିଲେ । ବାଞ୍ଛାନିଧି ସେନାପତି, କୁବେର ସାହୁ, ନାରାୟଣ ନନ୍ଦ, ନରସିଂହ ନନ୍ଦ, ଲକ୍ଷ୍ମଣ ମହାରଣା, ଅରକ୍ଷିତ ସାହୁ, ଜଗନ୍ନାଥ ସାହୁ, ବାସୁ ପରିଡ଼ା, ରାମଚନ୍ଦ୍ର ମହାନ୍ତି, ବିଦ୍ୟାଧର ମଲ୍ଲି, ମାଗି ବେହେରା, ସୁକ୍ରୁ ବେହେରା, ଶାମ ସାହୁ, ଶ୍ରୀଧର ଦାସ, ଉଦୟ ନାଥ ପୃଷ୍ଟି, ନିତ୍ୟାନନ୍ଦ ଦାସ, ଭରତ ସାହୁ । ୧୯୪୨ ଅକ୍ଟୋବର ମାସରେ ଉପରୋକ୍ତ ବ୍ୟକ୍ତିମାନେ ଜେଲ୍ ଗଲେ । ମୋତେ ନିତ୍ୟାନନ୍ଦ ଦାସ, ଭରତ ସାହୁ, ଜଗନ୍ନାଥ ସାହୁ, ରାମ ମହାନ୍ତିଙ୍କୁ ଧାନ କୁଟିବା ପାଇଁ କହିଲେ । ଆମେ ମନାକଲୁ । ତେଣୁ ମୋତେ ଓ ନିତ୍ୟାନନ୍ଦ ଦାଶଙ୍କୁ କୋଡ଼ିଏ ବେତ ଲେଖାଏଁ ସଜା ଜେଲ୍‌ରକୁ ଅର୍ଡର୍ କଲେ । ଭରତ ସାହୁ, ରାମ ମହାନ୍ତି, ଜଗନ୍ନାଥ ସାହୁଙ୍କୁ ମାଣ୍ଡୁସଜା ବୋଇଲେ । ଉଷୁନାଖୁଦ ଜାଉ କରି ଅଲଗା ଖାଇବାକୁ ଗ୍ଡ଼ିଦିନ ଦେଲେ । ମୋତେ ନିତ୍ୟାନନ୍ଦ ଦାସଙ୍କୁ ବେତସଜା ହେଲା । ପାଣିରେ ବେତ ଦୁଇଦିନ ବତୁରା ହେଲା । ମୋତେ ବାଡ଼େଇଲା ଏବଂ ନିତ୍ୟାନନ୍ଦ ଦାସଙ୍କୁ ବାଡ଼େଇଲେ ନାଜର । ସିପାହୀ ଦୁଇଜଣଙ୍କର ଗ୍ରାମ ସିନ୍ଦୁରିଆ ଜୋଡ଼େଇଲେ ଗୋଡ଼ ଓ ମୁଣ୍ଡ ପାଖରେ ଗ୍ରିଜଣ ବସି ଧରିଲେ । ବେତସଜା ପରେ ଆଇଡିନି ବେଞ୍ଜିନ୍ ଲଗାଇ ଛାଡ଼ିଦେଲେ । ମୋର ବସନ୍ତ ହୋଇଥିଲା ।

ଚମଡ଼ା ପତଳା ଥିଲା । ରକ୍ତ ପିଚ୍‌ପିଚ୍ ବାହାରୁଥାଏ । ବେତସଜା ପୂର୍ବରୁ ପ୍ରଭୁଙ୍କୁ ପ୍ରାର୍ଥନା କରି ଶୋଇଲି । ମୁଁ ଗଣିଲି ୧୧ ବେତଯାଏ । ତା'ପରେ ଚେତା ବୁଡ଼ିଗଲା ଆଉ ମନେ ରହିଲା ନାହିଁ । ଆଇଡିନ୍ ବେଞ୍ଜିନ୍ ଦେଇ ଚେତା କରାଇବାରେ ମୁଁ ଜାଣିଲି । ମୋତେ ଭାରି କଷ୍ଟ ହେଉଥାଏ । ଗୋଟିଏ ପଶୁ ଜନ୍ତୁକୁ ଗୁଳି କରିଦେଲେ ଯେପରି ନୋଗ୍ସ ହୋଇ ରହେ ମୁଁ ସେହିପରି ହେଉଥିଲି । ସେ ଦୃଶ୍ୟ ମୋର ସାଥିମାନେ ଦେଖୁଥିଲେ । ସମସ୍ତଙ୍କୁ ଜେଲ୍ ଭିତରେ ଦୁଆର ବନ୍ଦକରି ବାହାରୁ ଗୁବିଦେଇ ରଖାଯାଉଥିଲା । ବେତ ସଜା ପରେ ବାହାରକୁ ଛାଡ଼ିଲେ ଆମକୁ ୧୫ ଦିନ ବିଶ୍ରାମ ଦିଆଗଲା । ସେତେବେଳକୁ ବାହାରେ ଲୋକମାନେ ସରକାରି ଘରେ ନିଆଁ ଲଗାଇ ଦେଇଥିଲେ । କଷ୍ଟି ଡାକୁଆ ଗୁଳି ଖାଇ ମରିଗଲାଣି । ନୂଆଗାଁଠାରେ ସେତେବେଳେ ଆନ୍ଦୋଳନର ଦାୟିତ୍ୱ ଆନନ୍ଦ ସ୍ୱାଇଁ, ସୁଦର୍ଶନ ସ୍ୱାଇଁ ପ୍ରଭୃତି ଆଦିବାସୀ ଦାୟିତ୍ୱ ନେଉଥିଲେ । ଲକ୍ଷ୍ମଣ ଜାନି, ରଘୁନାଥ ଜାନି, ମୁଳିଆ ଜାନି, ଭାଗବତ ଜାନି, ସୁଦର୍ଶନ ସ୍ୱାଇଁ ବାଉରି ସାହୁ ପ୍ରଭୃତି କରାଇଥିଲେ । କଷ୍ଟି ଡାକୁଆ ମରିଗଲା ପରେ ୧୯୪୨ ମସିହାରେ ଗିରଫ କରି ଆଣିଲେ ନିମ୍ନଲିଖିତ ଲୋକଙ୍କୁ । ଗଦାଧର ସାହୁ, କସ୍ତୁରି ପରିଡ଼ା, ବୁଧି ପରିଡ଼ା, ପ୍ରହଲ୍ଲାଦ ସ୍ୱାଇଁ । ୧୯୪୫ କଷ୍ଟି ଡାକୁଆର ଶ୍ରାଦ୍ଧ ଦିବସ ନୂଆଗାଁଠାରେ ପାଳନ କରାଗଲା । ମୁଁ ସେତେବେଳକୁ ନୂଆଗାଁ ଥାନା କମିଟିର ସଭାପତି ଥିଲି । ଉକ୍ତ ସଭା ନୂଆଗାଁଠାରେ ପୁଲିସ୍ କରାଇଦେଲେ ନାହିଁ । ସେଠାରୁ ଯାଇ କୋରଡ଼ା ପାଖରେ ପଦାରେ ସଭା ହେଲା । ଉକ୍ତ ସଭାରେ ପ୍ରାୟ ଦଶ ହଜାର ଲୋକ ଜମା ହୋଇଥିଲେ । ସେଥିରେ ସ୍ତ୍ରୀ ଲୋକ ହେବେ ଦୁଇ ହଜାର । ସମସ୍ତଙ୍କୁ ଭାତ, ଡାଲି, ତରକାରୀ ଖୁଆଇବା ବ୍ୟବସ୍ଥା କରିଥିଲୁ । ଉକ୍ତ ସଭାରେ ସାରଙ୍ଗଧର ଦାସ, ବିଶ୍ୱନାଥ ପଣ୍ଡିତ, ଧୂଳୀଶ୍ୱର ବସ୍ତିଆ, ଘନଶ୍ୟାମ ମହାପାତ୍ର ଯୋଗ ଦେଇଥିଲେ । ସେମାନଙ୍କ ଭାଷଣରେ ଲୋକମାନେ ମୁଗ୍ଧ ହୋଇଯାଇଥିଲେ । ପ୍ରଜାମଣ୍ଡଳ ସଂଗଠନ ଦୁଇଗୁଣ ହୋଇଯାଇଥିଲା । ନୟାଗଡ଼ ପ୍ରଜାମଣ୍ଡଳର ପ୍ରତ୍ୟେକ କର୍ମୀ ଯୋଗ ଦେଇଥିଲେ । ବାଞ୍ଛାନିଧି ସେନାପତି, ଶ୍ରୀଧର ଦାସ, ଲକ୍ଷ୍ମଣ ମହାରଣା, କୁବେର ସାହୁ, ଆନନ୍ଦ ସ୍ୱାଇଁ, ଉଦୟ ନାଥ ପୃଷ୍ଟି ପ୍ରଭୃତି ଏଥିରେ ଯୋଗଦେଇଥିଲେ ।

## ରାଜାଘର କଥା

ଜେଲରେ ମୋତେ ଜଙ୍ଗଲ କାମ ପାଇଁ ପଠାଯାଏ । ମୁଁ ଜଙ୍ଗଲ କାମକୁ ଯାଏ, ମୁଣ୍ଡିଆରୁ ବାଉଁଶ ଓ କଣିକା ବୋହିକି ଆଣେ । ରାଜା ଉଆସକୁ ସଫା କରିବା ପାଇଁ ଆମ୍ଭେମାନେ ଯାଉଥିଲୁ । ଥରେ ହିନ୍ଦୋଳର ରାଜାଙ୍କ ଝିଅ ନୂଆରାଣୀ ଆମ ଛାଉଣିକୁ ଆସି ମୋତେ ଡାକିଲେ । ପଚାରିଲେ ତୁମ୍ଭେମାନେ ରାଜାଙ୍କୁ ବାହାର କରିବା ପାଇଁ ଆନ୍ଦୋଳନ କରୁଛ । ମୁଁ କହିଲି ଆମେ ରାଜାଙ୍କୁ ବାହାର କରିବା ପାଇଁ ଆନ୍ଦୋଳନ କରୁନାହୁଁ । ଆମେ ଆନ୍ଦୋଳନ କରୁଛୁ ବିଲାତରୁ ଇଂରେଜମାନେ ଆସି ଏଠାରେ ଶାସନ କରୁଛନ୍ତି । ତାହାଙ୍କୁ ଭାରତବର୍ଷରୁ ବାହାର କରିବା ପାଇଁ ଆମେ ଆନ୍ଦୋଳନ କରୁଛୁ । ଆମର ରାଜା ବି ପରାଧୀନ । ତାଙ୍କ ଉପରେ ମାଲିକ ପଲିଟିକାଲ ଏଜେଣ୍ଟ ଅଛି । ରାଜାଙ୍କଠାରୁ କିଛି ସୁବିଧା ପାଇଁ ଆମ୍ଭେମାନେ ଦାବୀ କରୁଛୁ । କିଛି ଲୋକ ପ୍ରତିନିଧି ଯାଇ ରାଜାଙ୍କ ସାଙ୍ଗରେ ବସି ଆମ୍ଭମାନଙ୍କର ଅଭାବ ଅସୁବିଧା ସେଠାରେ ଉପସ୍ଥାପିତ କରିବେ । ଏହାପରେ ଚୁଡ଼ାଛତୁଆ ଗୁଡ଼ ୨ ବିସା, ନଡ଼ିଆ କଦଳୀ ଜଳଖିଆ ପାଇଁ ଆମକୁ ଦେଇଥିଲେ । ଏହାକୁ ଅନ୍ୟମାନେ ଖାଇଲେ ମୁଁ ଖାଇଲି ନାହିଁ । ଆଗରୁ ଆସିଥିବା ପ୍ରଜାମଣ୍ଡଳର ନେତୃସ୍ଥାନୀୟ କର୍ମୀମାନେ ଠିକ୍ କରିଥିଲୁ । ଜେଲ୍ ଖାଦ୍ୟ ଖାଇବୁ, ବାହାର ଖାଦ୍ୟ ଖାଇବୁ ନାହିଁ । ଜେଲରେ ତେଲ ୭ ଦିନରେ ଥରେ ରବିବାରେ ଦିଆଯାଏ । ଆମେ ନିଷ୍ପତ୍ତି କରିଥିଲୁ ଦାଢ଼ି କାଟିବୁ ନାହିଁ । ଦାଢ଼ିକଟା ପାଇଁ କିଛି ଦିଅନ୍ତି ନାହିଁ । କେବଳ କଇଁଚି ଦିଅନ୍ତି । ସେଥିପାଇଁ ନିଷ୍ପତ୍ତି କରିଥିଲୁ, ପୁରା ଦାଢ଼ି ରଖିଲୁ । ଜେଲ୍‌ରେ ଥରେ କାନିକା, ପାଏସ୍, ମିଠା ଦେଲେ ଆମେ ଖାଇଲୁ ନାହିଁ । ପଛରେ ଯେଉଁମାନେ ଜେଲ୍ ଆଇଥିଲେ ସେମାନେ ଖାଇଲେ । ଆମେ ସାଧା ଖାଦ୍ୟ ନେଇ ଖାଇଥିଲୁ । ରମାକାନ୍ତ ମିଶ୍ର ଡାକ୍ତର ବହୁତ ବୁଝାଇଲେ ମଧ୍ୟ ଆମେ ସେସବୁ ଖାଇଲୁ ନାହିଁ । ଅନ୍ୟମାନେ ଖାଇଲେ ।

## ଜେଲ୍‌ର ଖବର

ଜେଲ୍‌ରେ ପ୍ରତ୍ୟେକ ଦିନ ସକାଳ ୬ ଘଣ୍ଟାରେ ବାହାର ଚାବି ଖୋଲିବେ ସିପାହୀମାନେ । ସନ୍ଧ୍ୟାପୂର୍ବରୁ ଖାଇବା ପାଇଁ ଦିଅନ୍ତି । ସନ୍ଧ୍ୟା ୬ ଘଣ୍ଟାରେ

ଆମ୍ଭମାନଙ୍କୁ ଜେଲ୍ ଭିତରେ ଥିବା ଘର ମଧ୍ୟରେ ବନ୍ଦ କରାଯାଏ । ରାତ୍ରିରେ ପାଳିକରି ଆମକୁ ପହରା ଦେବାକୁ ହୁଏ । ସେଠାରେ ଯେତେ ଲୋକ ଥିବେ ସେମାନଙ୍କର ସଂଖ୍ୟାର ଗୁଳିଶ ଜଣ ଖବର 'ଆଛା' ଏପରି ଜଣକୁ ୨ ଘଣ୍ଟାରେ ରାତ୍ରୀ ୬ ଘଣ୍ଟାରୁ ସକାଳ ୬ ଘଣ୍ଟା ଯାଏ ଡାକିବାକୁ ପଡ଼େ । ମୋତେ ଥରେ ରାତ୍ରି ୧୨ ଘଣ୍ଟାରୁ ୨ ଘଣ୍ଟା ଭିତରେ ନିଦ ହୋଇଗଲା । କାରଣ ରାତ୍ରିରେ ଭାରି ଗରମ ହୁଏ । ଘର ଭିତରେ ପବନର କୌଣସି ବ୍ୟବସ୍ଥା ନଥାଏ । ତେଣୁ ସନ୍ଧ୍ୟାବେଳୁ ନିଦ ହୁଏ ନାହିଁ । ରାତ୍ରି ୧୨ ଘଣ୍ଟାରେ ନିଦ ହୋଇଯାଏ । ସେହି ସିପାହୀ ଆସି ମୋତେ ମାଡ଼ ଦେଲେ, କହିଲେ, ହାଜର ବନ୍ଦ କରିଦେଲୁ । ସିପାହୀ ଧରିଥିବା ବାଡ଼ିରେ ଦୁଇ ପାହାର ବାଡ଼େଇଲେ । ତା'ପରେ ପୁଣି ୧ ଘଣ୍ଟା ଡାକିବା ପାଇଁ ପଡ଼ିଲା । ଜେଲ୍‌ରେ ଏପରି ଅନେକ ସାଙ୍ଗ ମାଡ଼ ଖାଉଥିଲେ । ମୋତେ ବିଭିନ୍ନ ସମୟରେ ବଗିଚ୍ଚା କାମ କରିବାକୁ ପଡୁଥିଲା । ତେଲଘଣା ପକାଇବା ପାଇଁ ପଡୁଥିଲା । ଧାନକୁଟା, ଧାନସିଝା, ପାଗ କରିବା, ନୂଆ ରାଜବାଟିରୁ ଧାନ ଆଣି ଜେଲ୍‌ରେ ସିଝାଇ ଚାଉଳ କରୁଥିଲି । ଅନେକ ସମୟରେ ମୋତେ ରାନ୍ଧିବାକୁ ପଡୁଥାଏ । ଗୁଆବାରି ଏବଂ ମାଳର ଆଦିବାସୀମାନେ ଜେଲକୁ ଗଲାବେଳେ ମୁଁ ରୋଷେଇ କରୁଥିଲି । ଆଶ୍ୱିନ ମାସରେ ପବନ୍ ଜୋରରେ ହେଲା । ବହୁତ ଅମୃତଭଣ୍ଡା ଗଛ ଭାଙ୍ଗିଗଲା । ବର୍ତ୍ତମାନ ଯେଉଁଠାରେ ଜଜକୋର୍ଟ ଡି.ଏଫ୍. ଅଫିସ ଅଛି ସେଇଠାରେ ଜେଲ୍‌ର ବଗିଚ୍ଚା ଥିଲା । ଅମୃତଭଣ୍ଡା କାଟିକାଟି ଆଙ୍ଗୁଠି ଟିପରୁ ରକ୍ତ ବାହାରିଲା । ୧୯୪୨ରେ ନୟାଗଡ଼ ଜେଲ୍‌ରେ ଯେଉଁମାନେ ବେରୁଆଁବାରୀ ସ୍କୁଲଘର ବରକୋଳା ବଙ୍ଗଳା ତିମ୍ବିରିଦୋଳି ଫରେଷ୍ଟ ବିଟି ନୂଆଗାଁ ଥାନାକୁ ପୋଡ଼ିବାକୁ ଯାଇଥିଲେ, ସେମାନଙ୍କୁ ବେଣୁଧର ପଟ୍ଟନାୟକ ଦାରୁଗା ଗୁଳି କରିବା ପାଇଁ ସିପାହୀକୁ କହିଥିଲେ । ସେଠାରେ କଷ୍ଟି ଡାକୁଆ ପଡ଼ିଗଲା । ପେଟରେ ଗୁଳି ବାଜିଗଲା । ତାକୁ ନେଇଗଲେ । ସେ ପାଣି ମାଗିଲା ବେଳେ ପାଣି ପିଇବା ପାଇଁ ଦେଲେ ନାହିଁ । ସେଠାରେ ବଳରାମ ପ୍ରଧାନ କୁସୁମଗାଡ଼ିଆ ତା'ର ଜଙ୍ଘରେ ଗୁଳି ବାଜିଲା । ତେଣୁ ସେଠାରୁ ଘୁଷୁରି ଘୁଷୁରି ଗଲା ଜଙ୍ଗଲକୁ । ଆଉ ଦୁଇଜଣ ଆହତ ହୋଇଥିଲେ । ସେଠାରୁ ପ୍ରତ୍ୟେକ ଲୋକ ଛିନଛତ୍ର ହୋଇ ଭାଙ୍ଗିଯାଇଥିଲେ । ରାତ୍ରରେ ଯାଇ ନିଜ ନିଜ ଗ୍ରାମରେ ପହଞ୍ଚିଲେ । ଆନନ୍ଦ ସ୍ୱାଇଁ, ସୁଦର୍ଶନ କୁର୍ମାପଡ଼ା ଗଲେ । ବାଟି ପରିଡ଼ା, ବୁଧି ପରିଡ଼ା କୁମୁଣ୍ଡି ଗଲେ ।

ଗଞ୍ଜାମରେ ରହିଲେ । ୪୪ ମସିହା ବେଳକୁ ଆନନ୍ଦ ସ୍ୱାଇଁ, ସୁଦର୍ଶନ ଆରେଷ୍ଟ ହେଲେ 'ଆସିକା'ରେ ।

## ୧୯୪୩

୧୯୪୩ରେ ଜେଲ୍‌ରୁ ଖଲାସ ହେଲି, ଘରକୁ ଆସିଲି । ଘରେ ଦୁଇଦିନ ରହି ଆନନ୍ଦ ସ୍ୱାଇଁ, ସୁଦର୍ଶନ ସ୍ୱାଇଁକୁ ଦେଖିବାକୁ ଗଲି । କୁମଣ୍ଡିରେ ଭାଟିଲି । ତାଙ୍କ ସାଙ୍ଗରେ ଦୁଇଦିନ ରହିଲି । ତାଙ୍କୁ ଆସିକା ଅଞ୍ଚଳକୁ ଯିବାକୁ କହିଲି । ସେମାନେ ତିନିମାସ ପରେ ଗିରଫ ହେଲେ ବୋଲି ଶୁଣିଲି । ଜାପାନର 'ହିରୋସିମା-ନାଗାସାକି'ରେ ପରମାଣୁ ବୋମା ପଡ଼ିଲା । ଆଜାଦ୍‌ହିନ୍ଦଫୌଜ ହାରିଗଲା । ନେତାଜୀ ଉଡ଼ାଜାହାଜ ଦୁର୍ଘଟଣାରେ ମରିଗଲେ । ସେତିକିବେଳେ ରାଜା ସରକାରଙ୍କ ତରଫରୁ ଗ୍ରାମର ରାଜାଙ୍କର ସର୍ବରାକାର ଲୋକଙ୍କୁ ନେଇ ପ୍ରତ୍ୟେକ ଗ୍ରାମରେ ନାମ ସଂକୀର୍ତ୍ତନ କଲେ । ମୋତେ ମୋ ମା' ଚନ୍ଦ୍ରାବତୀ ବେହେରା ପଚାରିଲେ ତୁମ୍ଭେମାନେ-ଜେଲ ଗଲ ଏଣୁ ସରକାରଙ୍କ ତରଫରୁ ନାମ ସଂକୀର୍ତ୍ତନ ପାଳନ କରିବେ । ମୁଁ କହିଲି, ବର୍ମା ଦେଶରେ ଆଜାଦ୍‌ହିନ୍ଦଫୌଜ ପରାସ୍ତ ହେଲେ । ତେଣୁ ଏପରି ପାଳନ କରୁଛନ୍ତି । ଆମ ଦେଶ ସ୍ୱାଧୀନ ହେବ । ଲକ୍ଷ୍ମଣ ମହାରଣା ଜେଲ୍‌ରୁ ଖଲାସ ହେଲାପରେ ଆମ୍ଭ ଘରକୁ ଆସିଲେ । କାର୍ତ୍ତିକ ପୂର୍ଣ୍ଣମୀ ବାସିଦିନ ମୋ ମା' କର୍ପୁର କେଳି ଗୁରଳ ଅରୁଆଭାତ, ମୁଗଡାଲି ରୋଷେଇ କଲା । ଭୋରୁ ମୁଁ ଓ ମହାରଣାବାବୁ ଖାଇ ବାହାରିଲୁ ଗୁଆବାରି । ଗୁଆବାରିର ଲୋକମାନେ ଭାଗି ଡରିଲେ । ସେ ମୌଜାର ବହୁତ ଲୋକ ଜେଲ୍‌ରେ ଥିଲେ । ବୁଧି ସ୍ୱାଇଁଙ୍କ ଦାଣ୍ଡପିଣ୍ଡାରେ ବସିଲୁ । ଗଦାଧର ମା' କହିଲା, ଏ ବାଡ଼ିଖିଆ ଆସିଲା ଆମ୍ଭର ସବୁ ଗଲା । ପିଲାମାନେ ସବୁ ଜେଲ୍‌ରେ ଆଉରି ଅଛନ୍ତି କହି ଗାଳିଦେଲା । ମୁଁ ମହାରଣା ବାବୁଙ୍କୁ କହିଲି, ଗ୍ଲଲ ପଳାଇବା । ସେତିକିବେଳକୁ ସମୟ ବି ଦିନ ଗୋଟାଏ ହେବ । ସେଠାରୁ ଗ୍ଲଲିଗଲୁ ପାଣସାହି ପାଖ ଆମ୍ବଗଛ ଯାଏ । ଯାଉଛୁ ଗ୍ରାମର ଦଣ୍ଡୁ ପରିଡ଼ା ଡାକିଲେ ଆସ ଆମ ଘରକୁ ଯିବା । ଫେରିଗଲୁ । ଆମକୁ ମୁଢ଼ିମିଶା ଦହି ଖାଇବା ପାଇଁ ଦେଲେ । ସେଠାରୁ ଗ୍ଲଲିଗଲୁ ରଗଡ଼ିସାହି । ମୋର ମାମୁଁ ଘରକୁ ଗଲୁ । ସେ ମୌଜାର

ଲୋକ ଆମକୁ ଦେଖି ଭୟ କଲେ । ମୋର ସାନ ମାମୁଁ ଦୀନବନ୍ଧୁ ବେହେରା ଆମକୁ ଖାଇବା ପାଇଁ ଦେଲେ ଗରମ ଭାତ, ଡାଲି, କଞ୍ଚା ଲେମ୍ବୁ । ରାତ୍ରିରେ ଶୋଇବା ପାଇଁ ଉକ୍ତ ମୌଜାରେ ଥିବା ମଙ୍ଗଳାକୁଠି 'ଓଦା' ଥିଲା । ପାରିବା ପାଇଁ ପାଳ ଗଦେ ଦେଲେ ସେ ଗାଁର ବିମ୍ବା ବେହେରା । ସକାଳେ ତାକୁ ପୁଲିସ୍ ନେଇ ଧମକ ଦେଇ କହିଲା, ତାଙ୍କୁ କାହିଁକି ପାଳ ଦେଲୁ ଶୋଇବା ପାଇଁ ? ମୋର ମାମୁଁଙ୍କୁ ପୁଲିସ୍ କହିଲା, ନାରାୟଣ ବେହେରା, ଲକ୍ଷ୍ମଣ ମହାରଣାଙ୍କୁ ତୁ ଖାଇବାକୁ ଦେଲୁ କାହିଁକି ? ସେ କହିଲେ, ମୋର ଭଣଜା ନାରାୟଣ ବେହେରା । ତେଣୁ ତାକୁ ଖାଇବାକୁ ଦେଲି । ମୋର ଭଣଜାକୁ ଖାଇବାକୁ ନ ଦେଇଥିଲେ ଉପବାସ ରହିଥାନ୍ତେ, ଆମେ ଖାଇଥାନ୍ତୁ କିପରି ? ଆପଣ ଯାହା ଦଣ୍ଡ ଦେବେ ଦିଅନ୍ତୁ । ପୁଲିସ କହିଲା, ଆଉ କେବେ ତାଙ୍କୁ ଖାଇବା ପାଇଁ ଦେବନାହିଁ । ମୋର ଆଉ ତିନିଜଣ ମାମୁଁ ଗୋପି ବେହେରା, ମଧୁ ବେହେରା, ମାନି ବେହେରା ମାନେ ଆମ ପାଖରେ ବସି ପଚାରିଲେ କ'ଣ ଖବର ? ତୁମେମାନେ ଜେଲ୍ ଗଲ, ଦୁଃଖ ସହିଲ, ବର୍ତ୍ତମାନ ତୁମ ପଛେ ପଛେ ପୁଲିସ୍ ଲାଗିଛି ! ମୁଁ କହିଲି ଆମର ଦେଶ ସ୍ୱାଧୀନ ହେବ । ତୁମ୍ଭେମାନେ କେହି ଭୟ କରନାହିଁ । ମୁଁ ପଚାରିଲି କୁଶିବିଡ଼ା ମୌଜା କେଉଁଠି ! କେତେ ବାଟ !! ଗୋପି ବେହେରା କହିଲେ, ପାଲଡ଼ା ପାହାଡ଼ ତଳେ ଭାରି ଜଙ୍ଗଲ ବାଟ । ଦୁଇକୋଶ ହେବ । ସେଠାକୁ ଯିବ କିପରି । ଭୋରୁ ଉଠି ମୁଁ ଓ ମହାରଣା ବାବୁ ଗଲୁ । ସେଦିନ ସେଠାରେ ପାରାଦ୍ୱିପ ପାଖ ନଦୀରେ ଗାଧେଇଲୁ । ପାରାଦ୍ୱିପ ମୌଜାର ପଶ୍ଚିମ ମୁଣ୍ଡରେ ଗୋଟିଏ କେଉଟ ଘର ଥିଲା । ତା'ଠାରୁ ଚୁଡ଼ାଭଜା ଅଣାକର କରି କିଣିଲୁ । ତାକୁ ବସି ଖାଇଲୁ । ପାରାଦ୍ୱିପ ମୌଜାରୁ କ୍ଷେତ୍ର ବେହେରା ସେବାଟେ ଗଲେ । ମୁଁ ତାଙ୍କୁ ପଚାରିଲି ତୁମେ କେଉଁଆଡ଼େ ଯିବ । ସେ କହିଲେ, ମୁଁ ଯିବି କୁଶିବିଡ଼ା । ମୁଁ କହିଲି, ଆମକୁ ନେଇ ତୁମେ ସାଙ୍ଗରେ ଚାଲ, କାରଣ ଜଙ୍ଗଲରେ ବାଘ ଭୟ ଆମେ ବି ରାସ୍ତା ଦେଖିନାହୁଁ । ସେ ରାଜିହେଲେ, ଆମେ ତାଙ୍କ ସାଙ୍ଗରେ ଗଲୁ କୁଶିବିଡ଼ା କଣ୍ଟି ଡାକୁଆ ଘରକୁ । ତା'ର ସ୍ତ୍ରୀ ପୁଅ ସବୁ ବିଷୟ ଲକ୍ଷ୍ମଣ ମହାରଣା ଟିପିଲେ । ତା'ପରେ ଉକ୍ତ ଲୋକ ଆମକୁ ସାଙ୍ଗରେ ଆଣିଲେ । ସେତେବେଳକୁ ଦିନ ଗୋଟାଏ ହେବ । ପାରାଦ୍ୱିପ ମୌଜାର ପୂର୍ବମୁଣ୍ଡରେ ତାଙ୍କର ଘର । ବିଲ ମଝିରେ ଥିଲା । ସେମାନେ ଆମକୁ କହିଲେ, ବେଳ ହେଲାଣି, ଖାଇ ପକାଇବ । ସେଠାରୁ ପଖାଳ

ଭାତ ଶିମ୍ବବେସର ଖାଇଲୁ । ମାର୍ଗଶୀର ମାସ ଖରା । ସେତେ ବାଧୁନଥିଲା । ସେଠାରୁ ଗ୍ଳଲି ଆସିଲୁ । ଆମ ଘରେ ସେଦିନ ରହିଲୁ । ତା' ପରଦିନ ମହାରଣା ବାବୁ 'ଓଡ଼ଗାଁ' ଗଲେ ।

## ୧୯୪୪

ନିର୍ବାଚ଼ନ ପ୍ରଗ୍ଳର ପାଇଁ ଗଞ୍ଜାମ ଜିଲ୍ଲାର 'ଆସିକା' ଗଲି । ସେଠାରେ ଅନନ୍ତ ତ୍ରିପାଠୀ ଶର୍ମା କବିରାଜ ଜିଲାବୋର୍ଡ ପାଇଁ ଠିଆ ହୋଇଥିଲେ । କୃଷ୍ଣଚନ୍ଦ୍ର ତ୍ରିପାଠି ଶର୍ମା କବିରାଜ ଉକ୍ତ ନିର୍ବାଚ଼ନ ପରିଗ୍ଳଳନା କରୁଥିଲେ । ସେଠାରୁ ମୁଁ ନରସିଂହ ନନ୍ଦ ଚିକିଟି ଗଲୁ । ସେଠାରେ ଦିବାକର ପଟ୍ଟନାୟକ କଂଗ୍ରେସ ବିରୋଧରେ ଠିଆ ହୋଇଥିଲେ । କଂଗ୍ରେସର ପାର୍ଥୀ ଜିତିଲେ । 'ମାଳତୀ ଦେବୀ' ଚିକିଟି ପେଣ୍ଠରେ ସଭା କରିଥିଲି । ତା'ପରେ ବ୍ରହ୍ମପୁରରେ ପ୍ରଗ୍ଳର ପାଇଁ ଗଲି । ସେଠାରୁ ବିଶ୍ୱନାଥ ଦାସ ମୋତେ ପଠାଇଲେ ପାରଳାଖେମୁଣ୍ଡି । ସେଠାରୁ ଗୁଣୁପୁର ପୁଣି ରାୟଗଡ଼ା ବିଶ୍ୱନାଥ ଦାସ ପଠାଇଥିଲେ । ରାଧାକୃଷ୍ଣ ବିଶ୍ୱାସ ରାୟଙ୍କ ପାଇଁ ନିର୍ବାଚ଼ନ ପ୍ରଗ୍ଳର କରିଥିଲି । ଥରେ ବେଗୁନିଆ ଯାଇ ପ୍ରଗ୍ଳର କରିଥିଲି କଂଗ୍ରେସର ବୈଷ୍ଣବ ଚରଣ ନାଗଙ୍କ ପାଇଁ । ଗଙ୍ଗାଧର ପାଇକରାୟ ହାରିଲେ । ସେଠାରେ ପ୍ରଥମଥର ପାଇଁ ମୋର ବିଶ୍ୱନାଥ ପଣ୍ଡିତଙ୍କ ସହିତ ମୋର ସମ୍ପର୍କ ଆରମ୍ଭ ହେଲା । ସେଠାରୁ ପ୍ରଗ୍ଳର ପାଇଁ ଓଳସିଙ୍ଗି ଯାଇଥିଲି ।

## ୧୯୪୭ - ନୟାଗଡ଼ର ପ୍ରଜା ମନ୍ତ୍ରିମଣ୍ଡଳ

ତା ୨୬-୭-୧୯୪୭ ଦିନ ଓଡ଼ଗାଁ ଧର୍ମଶାଳାରେ ପ୍ରଜାମଣ୍ଡଳ କର୍ମୀ ସମ୍ମିଳନୀ ବସିଥିଲା । ସେଠାରେ ପ୍ରସ୍ତାବ ହେଲା ଯେ ବାଞ୍ଛାନିଧି ସେନାପତି ଓ ଶ୍ରୀଧର ଦାସ ମନ୍ତ୍ରୀ ହେବେ । ରାଜାଙ୍କ ଭାଇ ବୃନ୍ଦାବନ ସିଂହ ମୁଖ୍ୟମନ୍ତ୍ରୀ ହେବେ । ମୁଁ ଓ ନରସିଂହ ନନ୍ଦ ଏହାର ବିରୋଧ କଲୁ । କାରଣ ଆମେ କହିଲୁ, ତୁମେ ମନ୍ତ୍ରୀ ହୋଇ କିଛି କରିପାରିବ ନାହିଁ । ପ୍ରଜାମଣ୍ଡଳର ଯାହା ସଂଗଠନ ଅଛି, ତାହା ନଷ୍ଟ ହୋଇଯିବ । ଏକଥା ସେମାନେ ଶୁଣିଲେ ନାହିଁ । ମନ୍ତ୍ରୀ ହେଲେ

ତିନିମାସ ପାଇଁ । ସେଥିରେ ଭାରତ ସହିତ ଗଡ଼ଜାତ ମିଶ୍ରଣକୁ କାର୍ଯ୍ୟକାରୀ କଲେ । ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ସେ ସମୟରେ ଦୁଇଜଣ ମନ୍ତ୍ରୀ ବାଞ୍ଛାନିଧି ସେନାପତି, ଶ୍ରୀଧର ଦାସଙ୍କୁ ବାହାର କରିଦେଇଥିଲେ । କିନ୍ତୁ ହରେକୃଷ୍ଣ ମହତାବ ପ୍ରଭୃତିଙ୍କୁ ଜଣାଇ ରାଜାଙ୍କଠାରୁ ଚାର୍ଜ ନେବାଯାଏ ସେ ଦୁଇଜଣ ରହିଗଲେ । ସେ ସମୟ ଭିତରେ ନୟାଗଡ଼ର କେତେ ସମତଳ ଅଞ୍ଚଳରେ ଜଙ୍ଗଲ ଥିଲା । ଉକ୍ତ ସମସ୍ତ ସମତଳ ଜାଗାକୁ ରାଜାଙ୍କ ସ୍ତ୍ରୀଙ୍କ ନାମରେ ରେକର୍ଡ କରାଗଲା । ବାଞ୍ଛାନିଧି ସେନାପତି, ଶ୍ରୀଧର ଦାସ, ଲକ୍ଷ୍ମଣ ମହାରଣାଙ୍କ ନାମରେ ସେମାନେ ରହିଥିବା ଘର ମାରଫଦାରରେ ପ୍ରଜାମଣ୍ଡଳ ଅଫିସ ରେକର୍ଡ କରାଗଲା । ସେ ବ୍ୟବହାର କରୁଥିବା କାରଟି ଶ୍ରୀଧର ଦାସ ନେଇ ତାକୁ ବିକ୍ରି କଲେ । ଏହାର ପ୍ରତିବାଦ କରି ମୁଁ ଓ ନରସିଂହ ନନ୍ଦ ହାତିଆଶିଳା ମୌଜା ତୋଟାରେ ଆମ୍ଭ ଅଞ୍ଚଳର ପ୍ରାୟ ପାଞ୍ଚଶହ ଲୋକଙ୍କୁ ନେଇ ସଭା କରାଇଥିଲି । ବିଭିନ୍ନ ଗ୍ରାମ ବୁଲିବୁଲି ପ୍ରଚାର କରିଥିଲୁ । ୧୯୪୭ ଅଗଷ୍ଟ ୧୫ ତାରିଖରେ ଦେଶ ସ୍ୱାଧୀନ ହେଲା ।

## ନୟାଗଡ଼ ଗଡ଼ଜାତ ଓଡ଼ିଶାରେ ମିଶ୍ରଣ

ଦେଖାଗଲା ଯେଉଁମାନେ କଂଗ୍ରେସ ବିରୋଧରେ ଯାଉଥିଲେ ସେମାନେ ସବୁ କଂଗ୍ରେସରେ ପଶିଗଲେ । ରାଜା ମହାରାଜା, ଧନୀ, ଟାଉଟରିଆ କଂଗ୍ରେସକୁ ଦାଖଲ କରିଗଲେ । ଭାରତ ସ୍ୱାଧୀନ ହେଲା ସତ, ଆଗ ଯାହା ଥିଲା ଏବଂ ଯେଉଁମାନେ କଂଗ୍ରେସ ଏବଂ ରାଜା ମହାରାଜାଙ୍କୁ ସାହାଯ୍ୟ କରୁଥିଲେ, ସେଇମାନେ କଂଗ୍ରେସର ମାଲିକ ହୋଇଗଲେ । ପ୍ରକୃତ କଂଗ୍ରେସ କର୍ମୀଙ୍କୁ କେହି ପଚାରିଲେ ନାହିଁ । ଏପରିକି ଯେଉଁମାନେ ସ୍ୱାଧୀନତା ଆନ୍ଦୋଳନରେ କାର୍ଯ୍ୟ କରିଥିଲେ, ସେମାନଙ୍କର ଗୋଟିଏ ତାଲିକା ବି କରାଗଲା ନାହିଁ । ତା ୧-୧-୧୯୪୮ରେ ନୟାଗଡ଼ ଗଡ଼ଜାତ ଓଡ଼ିଶାରେ ମିଶ୍ରଣ ହେଲା । ପ୍ରଜା ଆନ୍ଦୋଳନର ବିଜୟ ହେଲା । ଭାରତ ସ୍ୱାଧୀନ ହେଲା । ନୟାଗଡ଼ ଗଡ଼ଜାତ ଓଡ଼ିଶାରେ ମିଶ୍ରଣ ହେଲା । ବୋଷ ଗଡ଼ଜାତ ଭାବେ ୧୯୪୯ରେ 'ମୟୁରଭଞ୍ଜ' ଓଡ଼ିଶାରେ ମିଶ୍ରଣ ହେଲା ।

## ସମାଜବାଦୀ ଦଳ ଗଠନ

ମହାତ୍ମାଗାନ୍ଧୀଙ୍କ ମୃତ୍ୟୁର ୩୦ ଦିନ ନ ପୁରୁଣୁ ସର୍ଦ୍ଦାର ପଟେଲଙ୍କ ନେତୃତ୍ୱରେ କଂଗ୍ରେସ ନିଷ୍ପତ୍ତି କଲା କଂଗ୍ରେସ ଭିତରେ ଉପଦଳ ରହିପାରିବ ନାହିଁ । ଏହାର ପ୍ରତିବାଦରେ ଜୟ ପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ସୋସିଆଲିଷ୍ଟମାନେ କଂଗ୍ରେସରୁ ବାହାରି ଆସି 'ସୋସିଆଲିଷ୍ଟ ଦଳ' ଗଠନ କଲେ । ମୁଁ ସେହି ପାର୍ଟିରେ ଯୋଗଦେଲି । ନୟାଗଡ଼ରୁ ମୋର ସାଥି ରାମଚନ୍ଦ୍ର ରଥ ସୋସାଲିଷ୍ଟ ପାର୍ଟିରେ ଯୋଗଦେଲେ । ସୋମନାଥ ପଟ୍ଟନାୟକ, ନରସିଂହ ପଟ୍ଟନାୟକ, ନନ୍ଦିଘୋର ଅନ୍ୟାନ୍ୟ ସାଥିମାନଙ୍କୁ ନେଇ ପାର୍ଟି ସଂଗଠନ କରାଗଲା । ଶିଖରପୁରରେ ଚୃଷୀ ଆନ୍ଦୋଳନ ହେଲା । ପ୍ରକୃତରେ ଭାଗଚୃଷି ଆନ୍ଦୋଳନ ରାଣୀମାହଲ ଜମି ଉପରେ ହେଲା । ସେଥିରେ ଚୃଷୀମାନେ ଜୟଲାଭ କଲେ ।

## ୧୯୪୮ - ବାହାଡ଼ାଝୋଲା ହାଟ ଆନ୍ଦୋଳନ

ବାହାଡ଼ଝୋଲା ହାଟକୁ ନିଲାମ କରାଗଲା । ତା'ର ପ୍ରତିବାଦ କରିଥିଲୁ । ସୋସାଲିଷ୍ଟ ପାର୍ଟିର କର୍ମୀ ସୋମନାଥ ସାହୁ, ଲକ୍ଷ୍ମଣ ମହାପାତ୍ର, ରାଜକିଶୋର ସାମଲ, ବଂଶୀଧର ସାହୁ, କାଶିନାଥ ସାହୁ, ନରସିଂହ ସାହୁ, ନୀଳମଣି ସାହୁ, ଭଗବାନ ସାହୁ, ଭାଇଗ ସାହୁ, ନଟବର ନାୟକ, ଶ୍ରୀଧର ମହାପାତ୍ର, ଅରକ୍ଷିତ ସାହୁ, ଯୁଧିଷ୍ଠିର ପଟ୍ଟନାୟକ, ଭିକାରୀଚରଣ ସାହୁ ପ୍ରଭୃତି ସାଥିମାନେ ମୋ ସହିତ ହାଟ ଆନ୍ଦୋଳନରେ ସକ୍ରିୟ ଭାଗ ନେଇଥିଲେ । ହାଟରେ ସଭା ହେଲା । ଉକ୍ତ ସଭାରେ ପ୍ରାୟ ୭ ହଜାର ଲୋକ ଜମା ହୋଇଥିଲେ । ଉକ୍ତ ସଭାରେ ଯୋଗ ଦେଇଥିଲେ ବିଶ୍ୱନାଥ ପଣ୍ଡିତ, ନିଶାମଣି ଖୁଣ୍ଟିଆ, ଦ୍ୱାରିକାନାଥ ଦାସ, ହରିହର ବାହିନୀପତି, ଲତିଫର ରେହମନ ପ୍ରସଙ୍ଗ ନେଇ ସଭାରେ ଭାଷଣ ଦେଇଥିଲେ । ସଭାପାଇଁ ବାହାଡ଼ାଝୋଲା ହାଟ ଗୋଟିଏ ଦିନ ବନ୍ଦ ହୋଇଗଲା, ଜଣେହେଲେ ହାଟକୁ ଆସିନଥିଲେ ।

୧୯୪୯

ମାଜିଷ୍ଟ୍ରେଟ୍ ଜଣେ ପୁଲିସ୍ ଇନିସ୍‌ପେକ୍ଟର ଫୌଜ ଧରି ଆସିଥିଲେ ହାତକଡ଼ି ନେଇ ହାଟକୁ । ମୋ ନାମରେ ଦୁଇଟି ମିଥ୍ୟା ମୋକଦ୍ଦମା କରାଗଲା । ଭଗବାନ ସାହୁ ମୁଁ, ମାଗୁଣି ପ୍ରଭୃତି ଗୁରିଜଣ ଜେଲ୍‌କୁ ଗଲୁ । ପୁରୀ ଜେଲ୍‌ରେ ଦୁଇମାସ ରହିଲୁ । ହାଟ ପାଇଁ ପୁରୀ ଜେଲ୍‌ରେ ଆମକୁ ଭୂଇଁକାମୁଡ଼ା ଶାଗ ଖାଇବାକୁ ଦେଉଥିଲେ । ବ୍ରହ୍ମପୁର ଅପିଲ୍ କରି ଖଲାସ ହେଲୁ । ଖଲାସ ଦିନ ହରିହର ବାହିନୀପତି ଜେଲ ଫାଟକ ପାଖକୁ ମୋତେ ନେବା ପାଇଁ ଆସିଥିଲେ । ଗାଡ଼ିଭଡ଼ା ଦେଇ ଆମ୍ଭମାନଙ୍କୁ ଘରକୁ ପଠାଇ ଦେଇଥିଲେ । ସାରଙ୍ଗଧର ଦାସଙ୍କ ସାଙ୍ଗରେ ମୁଁ କାମ କରିଥିଲି । ସୋସାଲିଷ୍ଟ ପାର୍ଟିର ନିମ୍ନଲିଖିତ ସାଥିମାନଙ୍କ ସାଙ୍ଗରେ କାମ କରିଥିଲି । ସେମାନେ ହେଉଛନ୍ତି ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବାଙ୍କବିହାରୀ ଦାସ, ବିଶ୍ୱନାଥ ପଣ୍ଡିତ, ପ୍ରଦୀପ୍ତ କୁମାର ଦାସ, ହରିହର ବାହିନୀପତି, ଦ୍ୱାରିକାନାଥ ଦାସ, ରାଜକିଶୋର ସାମନ୍ତରାୟ, ଧୂଳୀଶ୍ୱର ବଡ଼ିଆ, ଘନଶ୍ୟାମ ମହାପାତ୍ର, ଶ୍ୟାମଳି ମହାପାତ୍ର, ନିଶାମଣି ଖୁଣ୍ଟିଆ, ରବୀନ୍ଦ୍ର ମୋହନ ଦାସ, ପ୍ରସନ୍ନ କୁମାର ପାଳ, ବନମାଳି ମହାରଣା, ନାରାୟଣ ସାହୁ, ତାରେଣି ପଟ୍ଟନାୟକ, ନାରାୟଣ ପତି, ଶୁଷ୍ମା ପତି, ନରସିଂହ ମହାନ୍ତି, ଆକୁଳାନନ୍ଦ ବେହେରା, ଗୋକୁଳାନନ୍ଦ ପ୍ରହରାଜ ପ୍ରମୁଖ । କଟକ ନାରୀ ସେବାସଦନ ସମ୍ମିଳନୀକୁ ଜୟ ପ୍ରକାଶ ନାରାୟଣ ଏବଂ ତାଙ୍କ ସ୍ତ୍ରୀ ପ୍ରଭାବତୀ ଦେବୀ ଆସିଥିଲେ । ପୁରୀ ସମ୍ମିଳନୀ, ବାରିପଦା ସମ୍ମିଳନୀ, ଜଳେଶ୍ୱର ସମ୍ମିଳନୀ, ବେତନଟୀ ସମ୍ମିଳନୀ, ଗୋପାଳପୁର, ବ୍ରହ୍ମପୁର, ବୋଇରାଣି ପ୍ରଭତି ପ୍ରାଦେଶିକ ସମ୍ମିଳନୀକୁ ମୁଁ ଯାଇଥିଲି । ସୋସାଲିଷ୍ଟ ପାର୍ଟି ପ୍ରଥମେ ମିଶ୍ରଣ ହେଲା ଆଗ୍ରର୍ଯ୍ୟ କୃପାଳୀଙ୍କର ପ୍ରଜାପାର୍ଟି ସହିତ । ଯାହା ଫଳରେ "ପ୍ରଜା ସୋସାଲିଷ୍ଟ ପାର୍ଟି" (PSP) ଗଠନ ହେଲା । ତା'ପରେ ସୋସାଲିଷ୍ଟ ପାର୍ଟିର ବିଭକ୍ତିକରଣ ଓ ପୁନଶ୍ଚ ମିଶ୍ରଣ ହୋଇ ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ହେଲା । ପରେ ପୁନଶ୍ଚ ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ଭାଙ୍ଗିଯାଇ କେବଳ ପ୍ରଜା ସୋସାଲିଷ୍ଟ ପାର୍ଟି ରହିଲା ।

୧୯୭୧ରେ 'ଇନ୍ଦିରା କଂଗ୍ରେସ'ର ପ୍ରବଳ ଢ଼ାଖାରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ପ୍ରଜା ସୋସାଲିଷ୍ଟ ପାର୍ଟି ନେତା 'କଂଗ୍ରେସ'ରେ ମିଶିଗଲେ ।

ବିଶ୍ୱନାଥ ପଣ୍ଡିତଙ୍କ ନେତୃତ୍ୱରେ ଖଣ୍ଡିତ 'ସୋସାଲିଷ୍ଟ ପାର୍ଟି' 'ଜନତା ପାର୍ଟି'ରେ ମିଶିଲା ପର୍ଯ୍ୟନ୍ତ ଦମ୍ଭ ହୋଇ ରହିଥିଲା । ମୋ ପୁଅ 'ଭାଗବତ' ୧୯୭୨ରେ 'ସୋସାଲିଷ୍ଟ ପାର୍ଟି' ଟିକେଟରେ 'ନୟାଗଡ଼'ରୁ ବିଧାନସଭାକୁ ଜିତି ତା'ର ରାଜନୈତିକ ସ୍ଥିତି ଜାହିର କରିଥିଲା । ପୁଣି କଂଗ୍ରେସ ପାର୍ଟିରେ କେତେକ କର୍ମୀ ଗଲେ । ୧୯୭୭ରେ ଭାରତବର୍ଷରେ ଜୟପ୍ରକାଶ ନାରାୟଣଙ୍କ ଉଦ୍ୟମରେ ଜନତା ପାର୍ଟି ଗଠନ କରାଗଲା । ସେଥିରେ ମୁଁ ନିଜେ ମେମ୍ବର ହୋଇଥିଲି । ଏବଂ ୫ ଜଣଙ୍କୁ କରିଥିଲି । ଉକ୍ତ ଦଳ କେନ୍ଦ୍ରରେ ସରକାର ଗଠନ ଗଲା । ମାତ୍ର ତିନିବର୍ଷ ଭିତରେ ଉକ୍ତ ଦଳ ଭାଙ୍ଗିଗଲା । ଏହା ପରଠାରୁ ମୁଁ ଆଉ କୌଣସି ରାଜନୈତିକ ଦଳରେ ରହିନାହିଁ । ସନ୍ନ୍ୟାସ ନ ନେଲେ ବି ରାଜନୀତିକ କାର୍ଯ୍ୟରୁ ସେବେଠାରୁ ନିର୍ଲିପ୍ତ ରହିଛି ।



## ନୟାଗଡ଼ ସ୍ୱାଧୀନତା ସଂଗ୍ରାମୀମାନଙ୍କ ନାମ ତାଲିକା

| | | |
|---|---|---|
| ୧ । | ନାରାୟଣ ନନ୍ଦ | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୨ । | ନରସିଂହ ନନ୍ଦ | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୩ । | ଜଗନ୍ନାଥ ସାହୁ | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୪ । | ଅରକ୍ଷିତ ସାହୁ | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୫ । | ବିଦ୍ୟାଧର ମନ୍ତ୍ରୀ | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୬ । | ବାସୁଦେବ ପରିଡ଼ା | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୭ । | ରାମଚନ୍ଦ୍ର ମହାନ୍ତି | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୮ । | ଲିଙ୍ଗରାଜ ବେହେରା | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୯ । | ଲକ୍ଷ୍ମଣ ମହାରଣା | : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୦ । | ବିନାୟକ ମିଶ୍ର | : ଗ୍ରାମ-କୁରାଳ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୧ । | ନାରାୟଣ ବେହେରା | : ଗ୍ରାମ-ହରିପୁର, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୨ । | କୁବେର ସାହୁ | : ଗ୍ରାମ-ବାହାଡ଼ାଝୋଲା, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୩ । | ବାଞ୍ଛାନିଧି ସେନାପତି | : ଗ୍ରାମ-ବାହାଡ଼ାଝୋଲା, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୪ । | ଲକ୍ଷ୍ମଣ ଭୂୟାଁ | : ଗ୍ରାମ-ବାହାଡ଼ାଝୋଲା, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୫ । | ବୀଣା ଗୁରୁ | : ଗ୍ରାମ-ଶିଆରିମାଳ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୬ । | ବାଉରୀ ସାହୁ | : ଗ୍ରାମ-ଘଡ଼େଇବନ୍ଧ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୭ । | ସନାତନ ପ୍ରଧାମ | : ଗ୍ରାମ-କଲିଆ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୮ । | ରଘୁନାଥ ଜାନି | : ଗ୍ରାମ-କଲିଆ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୧୯ । | ଲକ୍ଷ୍ମୀଧର ପ୍ରଧାନ | : ଗ୍ରାମ-କଲିଆ, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୨୦ । | ବାସୁଦେବ ଜାନି | : ଗ୍ରାମ-ମାରେଡ଼ି, ଥାନା-ଓଡ଼ଗାଁ, ଜି-ନୟାଗଡ଼ |
| ୨୧ । | ଆନନ୍ଦ ସ୍ୱାଇଁ | : ଗ୍ରାମ-ଥୁଆବାରି, ଥାନା-ନୂଆଗାଁ, ଜି-ନୟାଗଡ଼ |
| ୨୨ । | ବୁଧି ପରିଡ଼ା | : ଗ୍ରାମ-ଥୁଆବାରି, ଥାନା-ନୂଆଗାଁ, ଜି-ନୟାଗଡ଼ |
| ୨୩ । | ଦଣ୍ଡପାଣି ସାହୁ | : ଗ୍ରାମ-ଥୁଆବାରି, ଥାନା-ନୂଆଗାଁ, ଜି-ନୟାଗଡ଼ |

| | |
|---|---|
| ୨୪ । ବୁଲା ସେଠୀ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୨୫ । ଗଦାଧର ସାହୁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୨୬ । ବାଳକୃଷ୍ଣ ସ୍ୱାଇଁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୨୭ । ବିଶ୍ୱନାଥ ସେଠୀ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୨୮ । ଜନାର୍ଦ୍ଦନ ସାହୁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୨୯ । ସପନି ସାହୁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୦ । ଅରକ୍ଷିତ ସାହୁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୧ । ବୈରାଗୀ ନେଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୨ । ବୁଲା ନାଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୩ । ବାହ୍ୱାଦୁର ନାଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୪ । ସୌରୀ ନାଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୫ । ଜଗ ନାଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୬ । ପ୍ରହ୍ଲାଦ ସ୍ୱାଇଁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୭ । ଦଣ୍ଟୁ ପରିଡ଼ା | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୮ । ଗଦେଇ ପରିଡ଼ା | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୩୯ । କହ୍ନେଇ ନାଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୦ । ପୁନିଆ ନାଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୧ । ଅରକ୍ଷିତ ସେଠୀ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୨ । ରାମ ସାହୁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୩ । ଲିଙ୍ଗରାଜ ନାଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୪ । ଅଗାଧୁ ନାଏକ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୫ । ସମ୍ବାରି ସେଠୀ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୬ । ଖଲିଆ ସେଠୀ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୭ । ଭାଗବତ ସାହୁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୮ । ଗୁରୁବାରି ସାହୁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |
| ୪୯ । ଲକ୍ଷ୍ମଣ ସାହୁ | : ଗ୍ରାମ-ଥୁଆବାରି ଥାନା-ନୂଆଗାଁ, ଜି-ନୟାଗଡ଼ |

୫୦ । ସୁଦର୍ଶନ ସ୍ୱାଇଁ : ଗ୍ରାମ-ଥୁଆବାରି, ଥାନା-ନୂଆଗାଁ, ଜି-ନୟାଗଡ଼
୫୧ । ବାଞ୍ଛା ସାହୁ : ଗ୍ରାମ-ମହିପୁର, ଥାନା-ନୂଆଗାଁ, ଜି-ନୟାଗଡ଼
୫୨ । ମୂଳିଆ ପ୍ରଧାନ : ଗ୍ରାମ-ବାମ୍ବୁରୀ, ଥାନା-ଓଡ଼ଗାଁ, ଜି-ନୟାଗଡ଼
୫୩ । ଭାଗବତ ଜାନି : ଗ୍ରାମ-କଣ୍ଟବାଙ୍କ, ଥାନା-ଓଡ଼ଗାଁ, ଜି-ନୟାଗଡ଼
୫୪ । ଚକର ବେହେରା : ଗ୍ରାମ-କାପ୍ତାପଲ୍ଲୀ, ଥାନା-ଓଡ଼ଗାଁ, ଜି-ନୟାଗଡ଼
୫୫ । ବଳରାମ ପ୍ରଧାନ : ଗ୍ରାମ-କୁସୁମଗାଡ଼ିଆ, ଥାନା-ଓଡ଼ଗାଁ, ଜି-ନୟାଗଡ଼
୫୬ । ସନେଇ ଜାନି : ଗ୍ରାମ-କୁଟିବାଡ଼ି, ଥାନା-ଓଡ଼ଗାଁ, ଜି-ନୟାଗଡ଼
୫୭ । ପୁନିଆଁ ମଳିକ : ଗ୍ରାମ-ଅଠରଗଣ୍ଡା, ଥାନା-ନୂଆଗାଁ, ଜି-ନୟାଗଡ଼
୫୮ । ଘନ ନାହାକ : ଗ୍ରାମ-ଅଠରଗଣ୍ଡା, ଥାନା-ନୂଆଗାଁ, ଜି-ନୟାଗଡ଼
୫୯ । ଖଲି ଚୌଧୁରୀ : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼
୬୦ । ଶୁକ୍ର ବେହେରା : ଗ୍ରାମ-ଖଲିଆଡିହି, ଥାନା-ଓଡ଼ଗାଁ, ଜି-ନୟାଗଡ଼
୬୧ । ଶ୍ରୀଧର ଦାଶ : ଗ୍ରାମ-ଗୋଡ଼ିପଡ଼ା, ଥାନା-ଶରଣକୂଳ, ଜି-ନୟାଗଡ଼
୬୨ । ଶ୍ୟାମସୁନ୍ଦର ସାହୁ : ଗ୍ରାମ-ତିମିଶର, ଥାନା-ଶରଣକୂଳ, ଜି-ନୟାଗଡ଼
୬୩ । ଭରତ ସାହୁ : ଗ୍ରାମ-ଇଟାମାଟି, ଥାନା-ନୟାଗଡ଼, ଜି-ନୟାଗଡ଼
୬୪ । ଉଦୟନାଥ ପୃଷ୍ଟି : ଗ୍ରାମ-ଗୋଡ଼ିପଡ଼ା, ଥାନା-ଶରଣକୂଳ, ଜି-ନୟାଗଡ଼
୬୫ । ପାଣୁ ସାହୁ : ଗ୍ରାମ-ଗୋଡ଼ିପଡ଼ା, ଥାନା-ଶରଣକୂଳ, ଜି-ନୟାଗଡ଼
୬୬ । ମହାଶିବ ନନ୍ଦ : ଗ୍ରାମ-ଗୋଡ଼ିପଡ଼ା, ଥାନା-ଶରଣକୂଳ, ଜି-ନୟାଗଡ

## ୬ ମାସରୁ କମ୍ ଜେଲ୍ ଭୋଗିଥିବା ସଂଗ୍ରାମୀଙ୍କ ନାମ ତାଲିକା

୧ । ରଘୁନାଥ ବେହେରା : ଗ୍ରାମ-ଜୟପୁର, ଥାନା-ଓଡ଼ଗାଁ, ଜି-ନୟାଗଡ଼
୨ । ରାମକୃଷ୍ଣ ଅଧିକାରୀ : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼
୩ । କାଶିନାଥ ସାହୁ : ଗ୍ରାମ-ଓଡ଼ଗାଁ, ଥାନା-ଓଡ଼ଗାଁ, ଜି-ନୟାଗଡ଼
୪ । ସଦାଶିବ ଷଡ଼ଙ୍ଗୀ : ଗ୍ରାମ-ଗୋଠବଣ, ଥାନା-ଓଡ଼ଗାଁ, ଜି-ନୟାଗଡ଼
୫ । ସୁଦାମ ବାରିକ : ଗ୍ରାମ-କୋରଡ଼ା, ଥାନା-ନୂଆଗାଁ, ଜି-ନୟାଗଡ଼
୬ । ସୁନିଆ ପରିଡ଼ା : ଗ୍ରାମ-ଶିଖରଗୋଛା, ଥାନା-ନୂଆଗାଁ, ଜି-ନୟାଗଡ଼

୭ । ନିତ୍ୟାନନ୍ଦ ସାହୁ : ଗ୍ରାମ-ଶିଖରଗୋଛା, ଥାନା-ନୂଆଗାଁ, ଜି-ନୟାଗଡ଼
୮ । ରାଧାଦାସ ସାହୁ : ଗ୍ରାମ-ଶିଖରଗୋଛା, ଥାନା-ନୂଆଗାଁ, ଜି-ନୟାଗଡ଼
୯ । ପାଣୁ ବେହେରା : ଗ୍ରାମ-ଗୋପପୁର, ଥାନା-ନୂଆଗାଁ, ଜି-ନୟାଗଡ଼
୧୦ । ଭାଇଗ ସାହୁ : ଗ୍ରାମ-ବେଗୁଆଁବାଡ଼ି, ଥାନା-ନୂଆଗାଁ, ଜି-ନୟାଗଡ଼
୧୧ । ଭୁବାନୀ ଅଧିକାରୀ : ଗ୍ରାମ-ଓଡ଼ଗାଁ, ଥାନା-ନୂଆଗାଁ, ଜି-ନୟାଗଡ଼

## ଜେଲ୍ ଭୋଗି ନଥିବା ସଂଗ୍ରାମୀଙ୍କ ନାମ ତାଲିକା

୧ । ସଦାଶିବ ସାହୁ : ଗ୍ରାମ-ବାହାଡ଼ାଖୋଲା, ଥାନା-ଓଡ଼ଗାଁ, ଜି-ନୟାଗଡ଼
୨ । ଚନ୍ଦ୍ରମଣି ସାହୁ : ଗ୍ରାମ-ବାହାଡ଼ାଖୋଲା, ଥାନା-ଓଡ଼ଗାଁ, ଜି-ନୟାଗଡ଼
୩ । ଲକ୍ଷ୍ମଣ ସାହୁ : ଗ୍ରାମ-ବାହାଡ଼ାଖୋଲା, ଥାନା-ଓଡ଼ଗାଁ, ଜି-ନୟାଗଡ଼
୪ । ମହାଦେବ ନନ୍ଦ : ଗ୍ରାମ-ଗୋଡ଼ିପଡ଼ା, ଥାନା-ଶରଣକୂଳ, ଜି-ନୟାଗଡ଼
୫ । ପାଣୁ ସାହୁ : ଗ୍ରାମ-ଗୋଡ଼ିପଡ଼ା, ଥାନା-ଶରଣକୂଳ, ଜି-ନୟାଗଡ଼
୬ । ମାଧବ ସେଠୀ : ଗ୍ରାମ-ବାହାଡ଼ାଖୋଲା, ଥାନା-ଓଡ଼ଗାଁ, ଜି-ନୟାଗଡ଼
୭ । ଦଣ୍ଡପାଣି ମହାପାତ୍ର : ଗ୍ରାମ-ହାତିଆଶିଳା, ଥାନା-ଓଡ଼ଗାଁ, ଜି-ନୟାଗଡ଼
୮ । କ୍ଷେତ୍ରବାସୀ ସୁବୁଦ୍ଧି : ଗ୍ରାମ-ହାତିଆଶିଳା, ଥାନା-ଓଡ଼ଗାଁ, ଜି-ନୟାଗଡ଼
୯ । ସର୍ବେଶ୍ୱର କର : ଗ୍ରାମ-ବାହାଡ଼ାଖୋଲା, ଥାନା-ଓଡ଼ଗାଁ, ଜି-ନୟାଗଡ଼
୧୦ । ଗୋଦାବରୀଶ ମିଶ୍ର : ଗ୍ରାମ-କରଡ଼ା, ଥାନା-ନୂଆଗାଁ, ଜି-ନୟାଗଡ଼
୧୧ । ରାମଚନ୍ଦ୍ର ବେହେରା : ଗ୍ରାମ-ଗୋପପୁର, ଥାନା-ଓଡ଼ଗାଁ, ଜି-ନୟାଗଡ଼
୧୨ । କୃଷ୍ଣଚନ୍ଦ୍ର ବେହେରା : ଗ୍ରାମ-ଗୋପପୁର, ଥାନା-ଓଡ଼ଗାଁ, ଜି-ନୟାଗଡ଼
୧୩ । କେତକୀ ଦେବୀ : ଗ୍ରାମ-ଇଟାମାଟି, ଥାନା-ନୟାଗଡ଼, ଜି-ନୟାଗଡ଼
୧୪ । ଭଜମନ ପରିଡ଼ା : ଗ୍ରାମ-ଥୁଆବାରୀ, ଥାନା-ନୂଆଗାଁ, ଜି-ନୟାଗଡ଼
୧୫ । ଦାସ ପରିଡ଼ା : ଗ୍ରାମ-ଥୁଆବାରୀ, ଥାନା-ନୂଆଗାଁ, ଜି-ନୟାଗଡ଼
୧୬ । ଖଲି ପରିଡ଼ା : ଗ୍ରାମ-ଥୁଆବାରୀ, ଥାନା-ନୂଆଗାଁ, ଜି-ନୟାଗଡ଼
୧୭ । ବାଟି ପରିଡ଼ା : ଗ୍ରାମ-ଥୁଆବାରୀ, ଥାନା-ନୂଆଗାଁ, ଜି-ନୟାଗଡ଼
୧୮ । ରବୀନ୍ଦ୍ର ସ୍ୱାଇଁ : ଗ୍ରାମ-ଥୁଆବାରୀ, ଥାନା-ନୂଆଗାଁ, ଜି-ନୟାଗଡ଼



## ନୟାଗଡ଼ ସ୍ୱାଧୀନତା ସଂଗ୍ରାମୀଙ୍କ ପରିଚୟ

**(୧) ନାରାୟଣ ନନ୍ଦ :** ୧୯୨୧ ମସିହାରୁ ଗାନ୍ଧିଜୀଙ୍କ ଡାକରାରେ ପୋଷ୍ଟମାଷ୍ଟର ଚାକିରି ଥାଇ ସେ ଚରଖାରେ ସୁତା କାଟି ଖଦି ପନ୍ଧୁଥିଲେ । ସାପ୍ତାହିକୀ ସମାଜ ପଢୁଥିଲେ । ସେଥିପାଇଁ ତାଙ୍କର ସରକାରୀ ଚାକିରି ଚାଲିଗଲା । ରଘୁନାଥଙ୍କର ପୂଜକ ଥିଲେ ଏବଂ ଜମିବାଡ଼ି ଥିଲା । ସେଗୁଡ଼ିକ ବି ତାଙ୍କଠାରୁ ଛଡ଼େଇ ନେଲେ । କିନ୍ତୁ ସେ ନ ଡରି ଚରଖାରେ ଲୁଗାକାଟୁଥିଲେ । ସେ ନୟାଗଡ଼ ପ୍ରଜାମଣ୍ଡଳର ପ୍ରତିଷ୍ଠାତା ଏବଂ ପ୍ରଥମ କର୍ମୀ । ନୟାଗଡ଼ର ଜଣେ ଲୋକ ପାନ କଣ୍ଟ୍ରାକ୍ଟର ନେଲା । ପାନ ନ ଖାଇବା ପାଇଁ ଆମେ ଲୋକଙ୍କୁ କହିଲୁ । ମୁଁ ଓ ରାମକୃଷ୍ଣ ଅଧିକାରୀ ଏପରି ପାଞ୍ଚ ଜଣ ବିରୋଧ କରିବାରୁ ୧ ମାସ ଲେଖାଏଁ ଜେଲ ହେଲା । ୪୨ ମସିହାରେ ମୋତେ ଦୁଇ ବର୍ଷ ଜେଲ ହେଲା ।

**(୨) ନରସିଂହ ନନ୍ଦ :** ଗାନ୍ଧିଜୀଙ୍କ ଡାକରାରେ ସେ ନୟାଗଡ଼ ପ୍ରଜାମଣ୍ଡଳରେ ଯୋଗଦେଇ ୪୨ ମସିହାରେ ଦୁଇବର୍ଷ ଜେଲ୍‌ରେ ରହିଥିଲେ । ସେ ଏବଂ ନାରାୟଣ ବେହେରା ବର୍ମାରୁ ଫେରିଥିବା ସୁଭାଷ ବୋଷଙ୍କର ସୈନିକ ଥିଲେ । ଏଇ ସଂଗଠନ ସେମାନେ ନୟାଗଡ଼ ଏବଂ ଗଞ୍ଜାମ ଜିଲ୍ଲାରୁ ଯାଇ କରିଥିଲେ ଏବଂ ହରିଜନ ସଂଗଠନ ବି କରିଥିଲେ । ମନ୍ଦିର ପ୍ରବେଶ କରିବା ପାଇଁ ହରିଜନମାନଙ୍କୁ ପ୍ରବର୍ତ୍ତିତ ଥିଲେ ।

**(୩) ଅରକ୍ଷିତ ସାହୁ :** ଗାନ୍ଧିଜୀଙ୍କ ଡାକରାରେ ନାରାୟଣ ନନ୍ଦଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ କର୍ମୀ ଥାଇ ଗାଁ ଗଣ୍ଡା ବୁଲି ପ୍ରଚାର କରୁଥିଲେ । ୪୨ ମସିହାରେ ଦୁଇ ବର୍ଷ ଜେଲ୍ ହୋଇଥିଲା । ଜେଲ୍ ଭିତରେ ନାରାୟଣ ବେହେରା, ନିତ୍ୟାନନ୍ଦ ଦାସଙ୍କୁ ବେତ ସଜା ଦିଆଗଲା । ତାଙ୍କୁ ମାଣ୍ଡୁ ସଜା ଦିଆଗଲା । ମାଣ୍ଡୁସଜା ହେଲା ଉଷୁନା ଖୁଦକୁ ଜାଉ କରି ଲୁଣ ନ ପକେଇ ଖାଇବାକୁ ଦେଉଥିଲେ ।

**(୪) ରାମଚନ୍ଦ୍ର ମହାନ୍ତି :** ପ୍ରଜାମଣ୍ଡଳର କର୍ମୀ ଥାଇ ଗାଁ ଗାଁ ବୁଲି ଲୋକଙ୍କ ଭିତରେ ସଂଗଠନ କରୁଥିଲେ । ୪୨ ମସିହାରେ ୧ ବର୍ଷ ଜେଲ୍ ଯାଇଥିଲେ । ଜେଲ୍‌ରୁ ଖଲାସ ହେଲାପରେ ବି ପ୍ରଜାମଣ୍ଡଳ ପାଇଁ କାମ

କରୁଥିଲେ ।

**(୫) ବିଦ୍ୟାଧର ମନ୍ତି :** ପ୍ରଜାମଣ୍ଡଳର କର୍ମୀ ଭାବେ କାମ କରୁଥିଲେ । ୪୨ ମସିହାରେ ତାଙ୍କୁ ଦେଢ଼ ବର୍ଷ ଜେଲ୍ ହେଲା । ଜେଲ୍‌ରୁ ଖଲାସ ହେଲାପରେ ବି ପ୍ରଜାମଣ୍ଡଳ ପାଇଁ କାମ କରୁଥିଲେ ।

**(୬) ନିତ୍ୟାନନ୍ଦ ଦାସ :** ପ୍ରଜାମଣ୍ଡଳର ଜଣେ ସକ୍ରିୟ କର୍ମୀ ଥିଲି । ୪୨ ମସିହାରେ ତାଙ୍କୁ ଗିରଫ କରି ନିଆଗଲା । ସେ ଧାନ ନ କୁଟିବାରୁ ବାହାରେ ତାଙ୍କୁ ଏବଂ ନାରାୟଣ ବେହେରାଙ୍କୁ ୨୦ ବେତ ଲେଖାଏଁ ବେତ ସଜା ଦିଆଗଲା । ଜେଲ୍ ଭିତରେ ସନ୍ଧ୍ୟା ହେଲାମାତ୍ରେ ଗୁଳି ପକେଇ ରଖୁଥିଲେ । ଯେତେ ଲୋକ ଥିବେ ଥରେ ଆଛା ବୋଲି ଡାକିବାକୁ ପଡ଼େ । ସଞ୍ଜ ହୋଇଗଲେ ଝରକା ପାଖକୁ ଡାକି ପିଟନ୍ତି । ଦିନସାରା ପରିଶ୍ରମ ହେତୁ ନିଦ ଆସିଯାଏ ।

**(୭) ବାସୁ ପରିଡ଼ା :** ସେ ପ୍ରଜାମଣ୍ଡଳର କର୍ମୀ ଥାଇ ୪୨ ମସିହାରେ ଜେଲ୍ ଯାଇଥିଲେ ।

**(୮) ଲିଙ୍ଗରାଜ ବେହେରା :** ସେ ପ୍ରଜାମଣ୍ଡଳର କର୍ମୀ ଥାଇ ପ୍ରଜାମଣ୍ଡଳର କାମ କରୁଥିଲେ । ୪୨ ମସିହାରେ ୧ ବର୍ଷ ଜେଲ୍ ଯାଇଥିଲେ ।

**(୯) ଲକ୍ଷ୍ମଣ ମହାରଣା :** ସେ ନୟାଗଡ଼ ପ୍ରଜାମଣ୍ଡଳର କର୍ମୀ ଥିଲେ । ବାଞ୍ଛାନିଧି ସେନାପତି ସଭାପତି ଏବଂ ସେ ସଂପାଦକ ଥିଲେ । ପ୍ରଜାମଣ୍ଡଳର ସମସ୍ତ କାର୍ଯ୍ୟ ସୁରୁଖୁରୁରେ ତୁଲେଇଥିଲେ । ୪୨ ମସିହାରେ ୧ ବର୍ଷ ଜେଲ୍ ଯାଇଥିଲେ ।

**(୧୦) ବିନାୟକ ମିଶ୍ର :** ସେ ପ୍ରଜାମଣ୍ଡଳର ସକ୍ରିୟ କର୍ମୀ ଥିଲେ । ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ସେ ଟ୍ରେନିଂ ନେଇଥିଲେ । ଗାନ୍ଧିଜୀଙ୍କ ପରାମର୍ଶରେ ଲାଟିନି ସଫା କରିବା ପାଇଁ ମଧ୍ୟ ଟ୍ରେନିଂ ନେଇଥିଲି । ସେ ୩୯ ମସିହାରେ ବାହାଡ଼ାଝୋଲା ଏରିଆକୁ ଯାଇ ନାରାୟଣ ବେହେରାଙ୍କର ଘରେ ରହିଥିଲେ । ଖାଇବା ପାଇଁ ଭାତ ବଢ଼ାହେବା ସମୟରେ ବାହାଡ଼ାଝୋଲା ଫାଣ୍ଡିର୍ କନେଷ୍ଟବଳ ରଘୁନାଥ ପଟ୍ଟନାୟକ ଚଉକିଦାର କୁଞ୍ଜ ନାହାକ ଭାଟସାହି, ବିହାରି ନାହାକ ତାଙ୍କୁ ଡାକିନେଇ ଗୋପପୁର (ହରିପୁର) ଲାଉବନ୍ଧଠାରୁ ତାଙ୍କୁ ବାଡ଼େଇବା ଆରମ୍ଭ କରି ମୌଜା ତହଙ୍ଗି ପାଖରେ ଥିବା ଦାଶ ମହାରଣା ତୋଟାରେ, ସେ

ଚେତାଶୂନ୍ୟ ହେବାପରେ, ଫୋପାଡ଼ିଦେଇ ପଳେଇଗଲେ । ତାଙ୍କ ମୌଜାର ଲୋକ ଶୁଣିପାରି ତାଙ୍କୁ ସେଠୁ ଖଟିଆ ସାହାଯ୍ୟରେ ନେଲେ । ସେ ମାଡ଼ରେ ତାଙ୍କୁ ଯକ୍ଷ୍ମା ହୋଇଗଲା । ୪୨ ମସିହାରେ ସେ ତିନି ବର୍ଷ ଜେଲ୍ ଗଲେ । ଏତେ ଅସୁବିଧା ସତ୍ତ୍ୱେ ବି ପ୍ରଜାମଣ୍ଡଳ କାମ କରୁଥିଲେ ।

(୧୧) **ନାରାୟଣ ବେହେରା :** ୧୯୩୮ ମସିହାଠାରୁ ନୂଆଗାଁ ଥାନା କମିଟିର ସଭାପତି ଥାଇ ଗାଁ ଗାଁ ବୁଲି କର୍ମୀମାନଙ୍କୁ ଉତ୍ସାହିତ କରୁଥିଲେ । ସାରଙ୍ଗଧର ଦାସ ପ୍ରଭୃତିଙ୍କ ସହ ସଂଗ୍ରାମରେ ସକ୍ରିୟ ଅଂଶ ଗ୍ରହଣ କରୁଥିବାରୁ ମିଥ୍ୟା କେସ୍‌ରେ ବାରମ୍ବାର ଜେଲ୍ ଭୋଗିଥିଲେ । ପୋଲିସ୍‌ର ଅକଥନୀୟ ଶାରୀରିକ ଅତ୍ୟାଚାର ଓ ବାରମ୍ବାର ଘର ଖାନତଲାସ ସତ୍ତ୍ୱେ ସଂଗ୍ରାମରୁ ବିଚ୍ୟୁତ ହୋଇ ନଥିଲେ ।

(୧୨) **କୁବେର ସାହୁ :** ସେ ଶିକ୍ଷକ ଥିଲେ । ପ୍ରଜାମଣ୍ଡଳରେ ଯୋଗଦେବାରୁ ତାଙ୍କର ଚାକିରି ଚାଲିଗଲା । ସେ କୁମ୍ପାପଡ଼ାରେ ଅଫିସ୍ ଗାର୍ଡ଼ରେ ଥିଲେ । ସେ ଘରକୁ କିଛିଦିନ ପାଇଁ ଆସିଲା ବେଳେ ନାରାୟଣ ବେହେରାଙ୍କୁ ଅଫିସ୍ ଗାର୍ଡ଼ ଦେଇ ଆସିଥିଲେ । ୪୨ରେ ତାଙ୍କୁ ଦୁଇବର୍ଷ ଜେଲ୍ ହେଲା । ଜେଲ୍‌ରୁ ଆସି ସେ ପ୍ରଜାମଣ୍ଡଳ ପାଇଁ କାମ କରୁଥିଲେ ।

(୧୩) **ବାଞ୍ଛାନିଧି ସେନାପତି :** ସେ ଗୋପବନ୍ଧୁ ଦାସଙ୍କର ସତ୍ୟବାଦୀ ବନବିଦ୍ୟାଳୟରେ ପାଠ ପଢ଼ି ଆସିବା ପରେ, ନୟାଗଡ଼ ପ୍ରଜାମଣ୍ଡଳ ତରଫରୁ ଭାଗବତ ପୂର୍ଣ୍ଣମୀରେ ଓଡ଼ଗାଁଠାରେ ଯେଉଁ ବିରାଟ ଜନସମାବେଶ ହୋଇଥିଲା, ସେ ସଭାରେ ତାଙ୍କୁ ପ୍ରଜାମଣ୍ଡଳ ସଭାପତି ରୂପେ ନିର୍ବାଚିତ କରାଗଲା । ସୁଚାରୁରୂପେ ପ୍ରଜାମଣ୍ଡଳ କାମ ସ୍ୱାଧୀନତା ପର୍ଯ୍ୟନ୍ତ ତୁଲେଇ ଆସିଥିଲେ । ବାହାଡ଼ାଝୋଲା ଏରିଆର ନାରାୟଣ ବେହେରା, କୁବେର ସାହୁ ପ୍ରଭୃତି ବହୁତ କର୍ମୀ ପ୍ରଜାମଣ୍ଡଳରେ ସକ୍ରିୟ ଭାବେ ଭଲ କାମ କରୁଥିଲେ । ଏମିତିକି ସେମାନେ ନିଜର ଚାଷକାମ ଛାଡ଼ିକରି ତାଙ୍କର ପରାମର୍ଶରେ କାମ କରୁଥିଲେ । ୪୨ ମସିହାରେ ୨ ବର୍ଷ ଜେଲ୍ ଯାଇଥିଲେ ।

(୧୪) **ଲକ୍ଷ୍ମଣ ଭୂୟାଁ :** ୧୯୪୨ ମସିହାରେ ଆନନ୍ଦ ସ୍ୱାଇଁ, ସୁଦର୍ଶନ ସ୍ୱାଇଁଙ୍କ ନେତୃତ୍ୱରେ ବେରୁଆଁବାଡ଼ି ସ୍କୁଲ ବରପଲା ରେଭିନ୍ୟୁ ବଙ୍ଗଳା ତିମିରିପରି

ଫରେଷ୍ଟ ବିଟ୍ ପୋଡ଼ି କରି କଣ୍ଟି ଡାକୁଆ ମରିଗଲେ । ଆନ୍ଦୋଳନରେ ଯୋଗଦେଇ ସେ ଗ୍ରାମରେ ଥିଲେ । ପୋଲିସ୍ ଆସି ତାଙ୍କୁ ଆରେଷ୍ଟ କରି ନେଲେ ଏବଂ ୨ ବର୍ଷ ଜେଲ୍ ହେଲା ।

**(୧୫) ବୀଣା ଗୁରୁ :** ୪୨ ମସିହାରେ ଦୁଇ ବର୍ଷ ଜେଲ୍ ଗଲେ । ସେଠାରୁ ଆସି ପ୍ରଜାମଣ୍ଡଳରେ କାମ କରୁଥିଲେ ।

**(୧୬) ବାଉରି ସାହୁ :** ସେ ପ୍ରଜାମଣ୍ଡଳ ପାଇଁ କାମ କରି ୧ ମାସ ଜେଲ୍ ଯାଇଥିଲେ ।

**(୧୭) ସନାତନ ପ୍ରଧାନ :** ପ୍ରଜାମଣ୍ଡଳ ପାଇଁ କାମ କରି ୪୨ ମସିହାରେ ୨ ବର୍ଷ ଜେଲ୍ ଯାଇଥିଲେ ।

**(୧୮) ରଘୁନାଥ ଜାନି :** ସେ ପ୍ରଜାମଣ୍ଡଳ କାମ କରୁଥିଲେ । ୪୨ ମସିହାରେ ତାଙ୍କୁ ଦୁଇବର୍ଷ ଜେଲ୍ ହେଲା ।

**(୧୯) ଲକ୍ଷ୍ମୀଧର ପ୍ରଧାନ :** ପ୍ରଜାମଣ୍ଡଳ କାମ କରିବାରୁ ୪୨ ମସିହାରେ ଦୁଇବର୍ଷ ଜେଲ୍ ଯାଇଥିଲେ ।

**(୨୦) ଆନନ୍ଦ ସ୍ୱାଇଁ :** ପ୍ରଜାମଣ୍ଡଳ କର୍ମୀ ହେବା ପୂର୍ବରୁ ନାରାୟଣ ବେହେରା ନୂଆଗାଁ ଥାନା ଦାୟିତ୍ୱରେ ଥିଲେ । ସେ ତାଙ୍କ ଘରେ ରହିଥିଲେ । ନଦୀରେ ଗାଧୋଇଲା ବେଳେ ତାଙ୍କୁ ମୁଁ ବୁଝାଇଥିଲି ଗାନ୍ଧୀଙ୍କର ନେତୃତ୍ୱରେ କାମ କରିବା ପାଇଁ । ଯାହା ଫଳରେ ସେ ଓ ତାଙ୍କ ମୌଜାର ବହୁତ ଲୋକ ଯୋଗ ଦେଲେ । ସେ ବେରୁଆଁବାରି ସ୍କୁଲ, ବରକଳା ବଙ୍ଗଳା, ତିମିର ଖାଲି ଫରେଷ୍ଟ ବିଟ୍ ପୋଡ଼ିସାରି ନୂଆଗାଁ ଆସିଲାବେଳେ ତାଙ୍କ ପାଖରେ ୨ ହଜାର ଲୋକ ଥିଲେ । ବେଣୁଧର ଦାରୁଗାଙ୍କ ନିର୍ଦ୍ଦେଶରେ କନେଷ୍ଟବଳ ଗୁଳି କଲା । କଣ୍ଟି ଡାକୁଆ ରକ୍ତାକ୍ତ ହୋଇ ପଡ଼ିଗଲେ । ବଳରାମ ପ୍ରଧାନ କୁସୁମଗାଡ଼ିଆଙ୍କ ଗୋଡ଼ରେ ଗୁଳି ବାଜିଲା । ସେଠି ଲୋକ ଛିନ୍ନଛତ୍ର ହୋଇ ପଳେଇଗଲେ । ସେଦିନ ସେ ଆମ ଅଞ୍ଚଳ ହୋଇ ମହିପୁର ସ୍କୁଲଆଡ଼େ ପଳେଇଗଲେ । ପୁଲିସ୍‌ବାଲା ଆସି ଗୁଆବାରି ଲୋକଙ୍କର ସବୁ ଜିନିଷ ନେଇଗଲେ । ସେ ଏବଂ ତାଙ୍କ ଭାଇ ସୁଦର୍ଶନ ବରକୋଳା ବଙ୍ଗଳାରୁ ଆଣିଥିବା ବନ୍ଧୁକ ନେଇ ରାତ୍ରିରେ ଜଙ୍ଗଲ ଦେଇ କୁମ୍ଭାଗଡ଼ା ଗୁଳିଗଲେ । ସେ ଗଞ୍ଜାମ ଜିଲ୍ଲାରେ ୪୨ ମସିହାରୁ ୪୩ ମସିହା ଯାଏ

ଲୁଚିଛପି ଗାଁଗହଳିରେ ରହିଲେ । ମୁଁ ଜେଲ୍‌ରୁ ଖଲାସ ହେଲାପରେ ତାଙ୍କୁ ଦେଖିବା ପାଇଁ କୁମୁଣ୍ଡି ଗଲି । ତାଙ୍କୁ ଦେଖିଆସିଲା ପରେ ଆସିକା ଯାଏ ସେମାନେ ପଳେଇଗଲେ । ଆସିକାଠାରୁ ଧରାପଡ଼ି ୧ ବର୍ଷ ଜେଲ୍‌ରେ ରହିଲେ । ଜେଲ୍‌ରୁ ଆସି ପୁଣି ପ୍ରଜାମଣ୍ଡଳ କାମ କଲେ ।

**(୨୧) ବାସୁଦେବ ଜାନି :** ୪୨ ମସିହାରେ ବରକୋଳା ଡିମିରିପଲ୍ଲି ଫରିବାଟି ପୋଡ଼ିଥିଲେ । ସେଠୁ ଗୁଳିରେ କଷ୍ଟି ଡାକୁଆ ଟଳିଗଲେ । ସେଠୁ ଅନ୍ୟମାନଙ୍କୁ ଧରାହୋଇ ୧ ବର୍ଷ ଜେଲ୍ ହେଲା ।

**(୨୨) କଣ୍ଟୁରି ପରିଡ଼ା :** ଗାନ୍ଧି ସେବାସଙ୍ଘକୁ ତେଲାଙ୍ଗକୁ ଯାଇଥିଲେ । ସେଠାରୁ ଆସିଲା ପରେ ଗାଁରେ ମିଥ୍ୟା କେଶ୍‌ରେ ଟଣାହୋଇ ଜେଲକୁ ଆଣିଲେ । ୪୨ ମସିହାରେ ତାଙ୍କୁ ଦେଢ଼ବର୍ଷ ଜେଲ୍ ହୋଇଗଲା । ସେ ଜଣେ ପ୍ରଜାମଣ୍ଡଳର ସକ୍ରିୟ କର୍ମୀ ଥିଲେ ।

**(୨୩) ବୁଧି ପରିଡ଼ା :** ପ୍ରଜାମଣ୍ଡଳ କର୍ମୀ ଥିବାରୁ ତାଙ୍କୁ ଜେଲ ହେଲା । ତାଙ୍କ ବାପା ନୟାଗଡ଼ ଜେଲ୍‌କୁ ଆଣିଲେ । ପୋଲିସ୍ ତାଙ୍କ ଘର ଲୁଟି ନେଲେ । ମୋହନ ଦାସ, ରଘୁନାଥ ଦାଶ ଏବଂ ମହିପୁର ଲୋକ ମିଶି ପୋଲିସ୍ ସହାୟତାରେ ଘରୁ ଗୋରୁ ଗାଇ ଏମିତିକି ମସିଣା ୪ଟି ବି ନେଇଗଲେ । ତାଙ୍କର ନୟାଗଡ଼ ଜେଲ୍‌ରେ ମୃତ୍ୟୁ ହୋଇଗଲା ।

**(୨୪) ଦଣ୍ଡପାଣି ସାହୁ :** ସିଏ ପ୍ରଜାମଣ୍ଡଳ କାମ କରୁଥିଲେ । ମହିପୁର ସ୍କୁଲ ଘର ପୋଡିବାରୁ ତାଙ୍କୁ ଦୁଇବର୍ଷ ଜେଲ୍ ହେଲା ।

**(୨୫) ବୁଲ୍ଲା ସେଠୀ :** ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ମହିପୁର ସ୍କୁଲ ପୋଡ଼ିଲା ପରେ ତାଙ୍କୁ ଜେଲ୍ ହେଲା । ଜେଲ୍‌ରୁ ଆସିଲା ପରେ ପ୍ରଜାମଣ୍ଡଳ ପାଇଁ କାମ କଲେ ।

**(୨୬) ଗଦାଧର ସାହୁ :** ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ଗୁଆବରି ସ୍କୁଲ ପୋଡ଼ିଲା ପରେ ତାଙ୍କୁ ଦୁଇବର୍ଷ ୪୨ ମସିହାରେ ଜେଲ୍ ହେଲା । ଜେଲ୍‌ରୁ ଖଲାସ ହେଲାପରେ ପ୍ରଜାମଣ୍ଡଳରେ କାମ କରୁଥିଲେ । ମଝିରେ ଥରେ ସରକାର ତାଙ୍କ ଗାଁକୁ ଜୋରିମାନା କଲେ । ସେମାନେ ଖାଲିସକୁ ଫେରେଇ ଦେଲେ । ମୋ ନେତୃତ୍ୱରେ ଦେଢ଼ଶହ ଲୋକ ରାଜାଙ୍କ ଦରବାର ସାମ୍ନାରେ ବସି ରହିଲେ ।

ରାଜା କିଛି ନ ବୁଝିବାରୁ ଆମେ ନିରାଶ ହୋଇ ଫେରିଲୁ । ଗୁଆବରି ମୌଜାର ଯେତେ ଆନ୍ଦୋଳନ ମୋ ନେତୃତ୍ୱରେ କରାଯାଉଥିଲା, ସ୍ୱାଧୀନତା ପର୍ଯ୍ୟନ୍ତ ସେ ପ୍ରଜାମଣ୍ଡଳ କାମକରିଛି ।

(୨୭) ବାଳକୃଷ୍ଣ ସ୍ୱାଇଁ : ପ୍ରଜାମଣ୍ଡଳର କାର୍ଯ୍ୟ କରି ୧୯୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ତାଙ୍କ ଘର ଗାଈ ବଳଦ ସମସ୍ତ ସମ୍ପତ୍ତି ଲୁଟି ନେଇଗଲେ । ତାଙ୍କୁ ଦୁଇବର୍ଷ ଜେଲ୍ ହେଲା । ଜେଲ୍‌ରୁ ଆସିଲା ପରେ ବି ପ୍ରଜାମଣ୍ଡଳ କାମ କଲେ ।

(୨୮) ବିଶ୍ୱନାଥ ସେଠୀ : ପ୍ରଜାମଣ୍ଡଳ କର୍ମୀ ହିସାବରେ କାମ କରୁଥିଲେ । ମହିପୁର ସ୍କୁଲ ପୋଡ଼ିଲାପରେ ତାଙ୍କ ଘରର ସମ୍ପତ୍ତି ଲୁଟି ନେଲେ । ତାଙ୍କୁ ୪୨ ମସିହାରେ ଦୁଇ ବର୍ଷ ଜେଲ୍ ହେଲା ।

(୨୯) ଜନାର୍ଦ୍ଦନ ସାହୁ : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୧୯୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ତାଙ୍କୁ ୨ ବର୍ଷ ଜେଲ୍ ହେଲା ।

(୩୦) ତପନ ସାହୁ : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ଦେଢ଼ବର୍ଷ ଜେଲ୍ ଗଲେ । ଜେଲ୍‌ରୁ ଆସିଲା ପରେ ପୁଣି ପ୍ରଜାମଣ୍ଡଳ ପାଇଁ କାମ କଲେ ।

(୩୧) ଅରକ୍ଷିତ ସାହୁ : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ଦେଢ଼ବର୍ଷ ଜେଲ୍ ଗଲେ । ଜେଲ୍‌ରୁ ଆସିଲାପରେ ପୁଣି ଦେଶ ପାଇଁ କାମ କଲେ ।

(୩୨) ବଇରାଗୀ ନାହାକ : ସେ ପ୍ରଜାମଣ୍ଡଳ କର୍ମୀ ଥାଇ ୪୨ ମସିହାରେ ୧ ବର୍ଷ ଜେଲ୍ ଗଲେ ।

(୩୩) ବୁଲୁ ନାହାକ : ସେ ପ୍ରଜାମଣ୍ଡଳର ଜଣେ କର୍ମୀ ଥିଲେ । ମହିପୁର ସ୍କୁଲ ପୋଡ଼ିଲା ପରେ ୧ ବର୍ଷ ପାଇଁ ଜେଲ୍ ଗଲେ ।

(୩୪) ବାହାଦୁର ନାହାକ : ସେ ପ୍ରଜାମଣ୍ଡଳର ଜଣେ କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ଦେଢ଼ବର୍ଷ ଜେଲ୍ ଗଲେ । ଖାଲିସ ତାଙ୍କ ଘର ସବୁ ଲୁଟି ନେଲେ ।

(୩୫) ସୌରୀ ନାହାକ : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ଦେଢ଼ବର୍ଷ ଜେଲ୍ ଗଲେ ।

(୩୬) ଢଗା ନାହାକ : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ଦେଢ଼ବର୍ଷ ଜେଲ୍ ଗଲେ ।

(୩୭) ପ୍ରହ୍ଲାଦ ସ୍ୱାଇଁ : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ଦେଢ଼ ବର୍ଷ ଜେଲ୍ ଗଲେ ।

(୩୮) ଦଣ୍ଡୁ ପରିଡ଼ା : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ଦେଢ଼ବର୍ଷ ଜେଲ୍ ଗଲେ ।

(୩୯) ଗଦେଇ ପରିଡ଼ା : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୧୯୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଲା ପରେ ତାଙ୍କୁ ଦେଢ଼ବର୍ଷ ଜେଲ୍ ହୋଇଗଲା । ତାଙ୍କ ଘର ଲୁଟି ନେଲେ ।

(୪୦) କନ୍ଦେଇ ନାଏକ : ୧୯୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଥିବାରୁ ତାଙ୍କୁ ୧ ବର୍ଷ ପାଇଁ ଜେଲ୍‌ଦଣ୍ଡ ଦିଆଗଲା । ସେ ପ୍ରଜାମଣ୍ଡଳର କର୍ମୀ ଥିଲେ ।

(୪୧) ବୁଲା ନାହାକ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୧୯୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଥିବାରୁ ତାଙ୍କୁ ଦେଢ଼ବର୍ଷ ଜେଲ୍ ଦଣ୍ଡ ଦିଆଗଲା ।

(୪୨) ଅରକ୍ଷିତ ସେଠୀ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଥିବାରୁ ତାଙ୍କୁ ଗିରଫ କରାଗଲା । ଦେଢ଼ବର୍ଷ ଜେଲ୍ ଦଣ୍ଡ ହୋଇଗଲା ।

(୪୩) ରାମ ସାହୁ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୪୨ ମସିହାରେ ସ୍କୁଲ ପୋଡ଼ିଥିବାରୁ ତାଙ୍କୁ ୨ ବର୍ଷ ଜେଲ୍ ଦଣ୍ଡ ହେଲା ।

(୪୪) ଲିଙ୍ଗରାଜ ନାଏକ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ମହିପୁର ସ୍କୁଲ ପୋଡ଼ିଥିବାରୁ ତାଙ୍କୁ ୪୨ ମସିହାରେ ୧ ବର୍ଷ ଜେଲ୍ ଦଣ୍ଡ ହେଲା ।

(୪୫) ଅଗାଧୁ ନାଏକ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୧୯୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଥିବାରୁ ତାଙ୍କ ଦେଢ଼ବର୍ଷ ଜେଲ୍ ଦଣ୍ଡ ହେଲା ।

(୪୬) ସମ୍ବାରି ସେଠୀ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଥିବାରୁ ତାଙ୍କୁ ଗିରଫ କରି ନେଲେ. ୧ ବର୍ଷ ଜେଲ୍ ହୋଇଗଲା ।

**(୪୭) ଖଲିଆ ସେଠୀ :** ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୪୨ ମସିହାରେ ମହିପୁର ସ୍କୁଲ ପୋଡ଼ିଥିବାରୁ ତାଙ୍କୁ ୨ ବର୍ଷ ଜେଲ୍ ଦଣ୍ଡ ହୋଇଗଲା ।

**(୪୮) ଭାଗବତ ସାହୁ :** ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ମହିପୁର ସ୍କୁଲ ପୋଡ଼ିବା ପରେ ୪୨ ମସିହାରେ ଦେଢ଼ବର୍ଷ ଜେଲ୍ ଦଣ୍ଡ ହୋଇଗଲା ।

**(୪୯) ଗୁରୁବାରୀ ସାହୁ :** ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ମହିପୁର ସ୍କୁଲ ପୋଡ଼ିବାପରେ ୪୨ ମସିହାରେ ଦେଢ଼ବର୍ଷ ଜେଲ୍‌ଦଣ୍ଡ ହୋଇଥିଲା ।

**(୫୦) ଲକ୍ଷ୍ମଣ ସାହୁ :** ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ମହିପୁର ସ୍କୁଲ ପୋଡ଼ିବା ପରେ ୪୨ ମସିହାରେ ଦେଢ଼ବର୍ଷ ଜେଲ୍‌ଦଣ୍ଡ ହୋଇଥିଲା ।

**(୫୧) ସୁଦର୍ଶନ ସ୍ୱାଇଁ :** ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ଡାକରା ଆସିଲା । ତାଙ୍କ ବଡ଼ ଭାଇ ଆନନ୍ଦ ସ୍ୱାଇଁ ଏବଂ ସେ ଆଦିବାସୀ ଓ ସ୍ଥାନୀୟ ଲୋକମାନଙ୍କୁ ନେଇ ଲୁହାର କଣରେ ନରୋତ୍ତମ ମଳିକକୁ ନେଇ ବେରୁଆଁବାଗୀ ସ୍କୁଲ ପୋଡ଼ି ଥିଲେ । ସେଠୁ ଆସି ବରକଳା ବଙ୍ଗଳା ପୋଡ଼ିଲେ । ତିବଲପାଲି ଫରେଷ୍ଟ ବିଟ୍ ପୋଡ଼ି ନୂଆଗାଁ ଥାନା ପୋଡ଼ିବା ପାଇଁ ଆସିଲାବେଳେ ଦାରୁଗା ନିର୍ଦ୍ଦେଶ କ୍ରମେ ଜଣେ କନେଷ୍ଟବଳ ଗୁଳି ଚଳେଇଲା । କଣ୍ଟି ଡାକୁଆ ପଡ଼ିଗଲା । ବଳରାମ ପ୍ରଧାନଙ୍କ ଗୋଡ଼ରେ ଗୁଳି ବାଜିଲା । ସେଠୁ ଲୁଚି ଯାଇ କୁମ୍ଭାପଡ଼ାରେ ଆତ୍ମଗୋପନ କରି ରହିଲେ । ସେଠି ଶୁଣିଲେ ଯେ ଗୁଆବରୀ ଗ୍ରାମକୁ ପୁରା ଲୁଟି ନେଇଛନ୍ତି । ସ୍ତ୍ରୀ ଲୋକଙ୍କୁ ଛାଡ଼ି ପୁରୁଷ ଲୋକଙ୍କୁ ଗିରଫ କରିନେଲେ । କୁମ୍ଭାପଡ଼ାରେ ରହି ଗଞ୍ଜାମ ଜିଲ୍ଲା ୪୨ ଠାରୁ ୪୩ ମସିହା ଯାଏ ସେଠି ରହିଲେ । ଜେଲ୍‌ରୁ ଖଲାସ୍ ହେଲାପରେ ଗଞ୍ଜାମ ଜିଲ୍ଲାର କୁମୁଣ୍ଡିକୁ ମୁଁ ଦେଖିବାକୁ ଯାଇଥିଲି । ସେଠୁ ଆସିକା ପଳେଇଲେ । ଆସିକାରେ ତାଙ୍କୁ ଗିରଫ କଲେ । ଜେଲ୍‌ରେ ୧ ବର୍ଷ ରହିଲା ପରେ ଖଲାସ ହୋଇ ୪୭ ମସିହାଯାଏ ପ୍ରଜାମଣ୍ଡଳର କାମ କଲେ ।

**(୫୨) ବାଞ୍ଛା ସାହୁ :** ୪୨ ମସିହାର ସ୍କୁଲ ପୋଡ଼ିଲା ପରେ ତାଙ୍କୁ ୧ ବର୍ଷ ପାଇଁ ଜେଲ୍ ହେଲା । ସେ ପ୍ରଜାମଣ୍ଡଳର କର୍ମୀ ଶେଷଯାଏ ଥିଲେ ।

**(୫୩) ମୁଳିଆ ପ୍ରଧାନ :** ସେ ପ୍ରଜାମଣ୍ଡଳର କର୍ମୀ ଥାଇ ୪୨ ମସିହାରେ ସ୍କୁଲ, ଡାକବଙ୍ଗଳା ପୋଡ଼ିବା ଦୋଷରୁ ତାଙ୍କ ଜେଲ୍ ହୋଇଗଲା ।

(୫୪) ଭାଗବତ ଜାନି : ସେ ପ୍ରଜାମଣ୍ଡଳର କର୍ମୀ ଥାଇ ୪୨ ମସିହାରେ ଆନ୍ଦୋଳନ କରି ଜେଲ୍ ଯାଇଥିଲେ ।

(୫୫) ଚକର ବେହେରା : ସେ ପ୍ରଜାମଣ୍ଡଳର କର୍ମୀ ଥିଲି । ୪୨ ମସିହାରେ ଆନ୍ଦୋଳନ କରି ୧ ବର୍ଷ ଜେଲ୍ ଯାଇଥିଲେ ।

(୫୬) ବଳରାମ ପ୍ରଧାନ : ପ୍ରଜାମଣ୍ଡଳ କାମ କରି ଜେଲ୍ ଯାଇଥିଲେ ।

(୫୭) ସନେଇ ଜାନି : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୪୨ ମସିହାରେ ଆନ୍ଦୋଳନ କରି ଜେଲ୍ ଯାଇଥିଲେ ।

(୫୮) ପୁନିଆଁ ମଳିକ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୪୨ ମସିହା ସ୍କୁଲ, ଡାକବଙ୍ଗଳା ପୋଡ଼ିଥିବାରୁ ଗିରଫ ହୋଇ ଜେଲ୍ ଯାଇଥିଲେ ।

(୫୯) ଘନ ନାୟକ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ୪୨ ମସିହାରେ ବଙ୍ଗଳା ଏବଂ ସ୍କୁଲ ପୋଡ଼ିବାରୁ ତାଙ୍କୁ ୧ ବର୍ଷ ଜେଲ୍ ଦଣ୍ଡ ହୋଇଥିଲା ।

(୬୦) ଖଲି ଚୌଧୁରୀ : ସେ ପ୍ରଜାମଣ୍ଡଳ କର୍ମୀ ଥିଲେ । ୪୨ ମସିହାରେ ଆନ୍ଦୋଳନ କରି ଜେଲ୍ ଯାଇଥିଲେ ।

(୬୧) ଶୁକ୍ର ବେହେରା : ସେ ପ୍ରଜାମଣ୍ଡଳର ସକ୍ରିୟ କର୍ମୀ ଥିଲେ । ପ୍ରଥମରୁ ପ୍ରଜାମଣ୍ଡଳ ପାଇଁ କାମ କରୁଥିଲେ । ସେ ଓଡ଼ଗାଁଠାରୁ ଘରକୁ ଆସିଲା ବେଳେ ପୋଲିସ୍ ତାଙ୍କୁ ବାଡ଼େଇ ବାଡ଼େଇ ଆଣି ନନ୍ଦିଘର ପାଖରେ ପକେଇଦେଲେ । ତାଙ୍କୁ ରାମ ମହାନ୍ତି, ଅରକ୍ଷିତ ସାହୁ, ବିଦ୍ୟାଧର ମନ୍ତ୍ରୀ ଖଟିଆ କରି ବୋଲଗଡ଼ ଡାକ୍ତରଖାନାକୁ ନେଲାବେଳେ ରାଜା ନେଇ ଜେଲ୍‌ରେ ପୂରେଇ ଦେଲେ । ଜେଲ୍‌ରେ ଔଷଧପତ୍ର ଦେଇ ଭଲ ହେଲାପରେ ଛାଡ଼ିଦେଲେ । ୪୨ ମସିହାରେ ଦୁଇବର୍ଷ ଜେଲ୍ ଗଲେ । ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ମେମ୍ବର ଥିଲେ । ସ୍ୱାଧୀନତା ପର୍ଯ୍ୟନ୍ତ ପୂରା ସମୟ ଦେଇ କାର୍ଯ୍ୟ କରିଥିଲେ ।

(୬୨) ଶ୍ରୀଧର ଦାଶ : ପ୍ରଜାମଣ୍ଡଳର ଅନ୍ୟତମ ପ୍ରମୁଖ ନେତା । ପରବର୍ତ୍ତୀ ସମୟରେ ନୟାଗଡ଼ ରାଜାଙ୍କ ଦ୍ୱାରା ଗଠିତ ମନ୍ତ୍ରୀପରିଷଦର ସଦ୍ୟସ୍ୟ ହୋଇଥିଲେ ।

**(୬୩) ଶ୍ୟାମସୁନ୍ଦର ସାହୁ :** ସେ ଜଣେ ପ୍ରଜାମଣ୍ଡଳର ସକ୍ରିୟ କର୍ମୀ ଥାଇ ୪୨ ମସିହାରେ ଦେଢ଼ବର୍ଷ ଜେଲ୍‌ଦଣ୍ଡ ପାଇଥିଲେ । ଜେଲ୍‌ରୁ ଆସିବାପରେ ପ୍ରଜାମଣ୍ଡଳ ପାଇଁ କାମ କରୁଥିଲେ । ନୟାଗଡ଼ରେ କ୍ୟାମ୍ପ ଜେଲ୍ ନଥିଲା ।

**(୬୪) ଭରତ ସାହୁ :** ସେ ନୟାଗଡ଼ରେ ଜଣେ ପ୍ରଜାମଣ୍ଡଳର ସକ୍ରିୟ କର୍ମୀ ଥିଲେ । ତାଙ୍କ ମା' ବି ପ୍ରଜାମଣ୍ଡଳ ପାଇଁ କାମ କରୁଥିଲା । ନୟାଗଡ଼ରେ କ୍ୟାମ୍ପ ଜେଲ୍ ନଥିଲା ।

**(୬୫) ରଘୁନାଥ ବେହେରା :** ସେ ପ୍ରଜାମଣ୍ଡଳର ସକ୍ରିୟ କର୍ମୀ ଥିଲେ । ମୋ ସାଙ୍ଗରେ ଆରେଷ୍ଟ ହୋଇଥିଲେ କିନ୍ତୁ ଜେଲ୍ ନନେଇ ଛାଡ଼ି ଦିଆଯାଇଥିଲା । ସେ ବାହାଡ଼ାଝୋଲା ହାଜତରେ ବାହାରେ ବସିଥାଏ. ମୋତେ ରଘୁନାଥ କନେଷ୍ଟବଳ ଜୋତା ପିନ୍ଧି ଚକଟୁଥାଏ । ସେ ଦେଖୁଥାଏ । ମୋତେ ହାତକଡ଼ି ଦେଇ ନୟାଗଡ଼ ନେଲେ । ତାଙ୍କୁ କୋର୍ଟରୁ ଖଲାସ କରି ଦେଲେ । ମୋତେ ଜେଲ୍‌ଦଣ୍ଡ ହୋଇଗଲା ।

**(୬୬) ରାମକୃଷ୍ଣ ଅଧିକାରୀ :** ସେ ପ୍ରଜାମଣ୍ଡଳର କର୍ମୀ ଥାଇ ପାନ କେଶ୍‌ରେ ଏକ ମାସ ଜେଲ୍ ଯାଇଥିଲେ ନାରାୟଣ ନନ୍ଦଙ୍କ ସାଙ୍ଗରେ ।

**(୬୭) କାଶିନାଥ ସାହୁ :** ସେ ପ୍ରଜାମଣ୍ଡଳର କର୍ମୀ ଥାଇ ପାନ କେଶ୍‌ରେ ଏକମାସ ଜେଲ୍ ଯାଇଥିଲେ ।

**(୬୮) ସଦାଶିବ ଷଡ଼ଙ୍ଗୀ :** ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ସେ ଜେଲ୍ ନ ଯାଇ ଆତ୍ମଗୋପନ କରି ବାହାରକୁ ଗୁଲିଯାଇଥିଲେ ।

**(୬୯) ସୁଦାମ ବାରିକ :** ୧୯୩୮ ମସିହାରେ ପ୍ରଜାମଣ୍ଡଳ ଗଠନ ହେଲାପରେ ମୁଁ, ଚନ୍ଦ୍ରମଣି ସାହୁ, ଲଡୁ ସାହୁ ତାଙ୍କ ମୌଜାକୁ ଯାଇ ପ୍ରଜାମଣ୍ଡଳ ୧୭ ନମ୍ବର ଦାବିପତ୍ର ଉପରେ ସଭା କରିଥିଲୁ । ପ୍ରତି ଗାଁରେ ଦାବିପତ୍ର ବାଣ୍ଟିବା ପାଇଁ ସେମାନଙ୍କୁ କହିଲୁ । ସେ ସେତେବଳେ ପ୍ରଜାମଣ୍ଡଳର କର୍ମୀ ଥିଲେ । ସନ୍ଧ୍ୟାବେଳେ ଖାଲିସ୍ ବିଭିନ୍ନ ପ୍ରଶ୍ନ କଲା । ରାତିରେ ପୋଲିସ୍ ଆମକୁ ଜଗି ବି ଶୋଇଲେ । ଆମେ ଭୋରୁ ଉଠି ପଳେଇଗଲୁ । ତା'ପରଦିନ ସେ ଆସି ବାହାଡ଼ାଝୋଲାରେ ପହଞ୍ଚିଲେ । ସେ ସଭାରେ କୁବେର ସାହୁ ଭାଷଣ ଦେଲେ । ତା'ପରେ ତାଙ୍କୁ ୧ ମାସ ଜେଲ୍ ନେଇଗଲେ ।

(୭୦) ସନେଇ ପରିଡ଼ା : ସେ ପ୍ରଜାମଣ୍ଡଳ କର୍ମୀ ଥାଇ କାମ କରୁଥିଲେ । ତାଙ୍କ ଉପରେ ବହୁତ ଅତ୍ୟାଚାର ମାଡ଼ ମାରି କନେଷ୍ଟବଳମାନେ ପାଟିରେ ମୁତିଲେ । ସେ ଜେଲ୍ ଯାଇଥିଲେ । ପ୍ରଜାମଣ୍ଡଳ କାମ କରୁଥିଲେ ।

(୭୧) ନିତ୍ୟାନନ୍ଦ ସାହୁ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ବାହାଡ଼ାଝୋଲା ହାଟରେ ସେ ମୁଢ଼ି ବ୍ୟବସାୟରେ ଥାଏ । ମୁଁ ସେଠି କାଗଜପତ୍ର ଦିଏ । ସେ ଆଣି ସୁଦାମ ପ୍ରଧାନକୁ କାଗଜପତ୍ର ଦିଏ ।

(୭୨) ରାହାସ ସାହୁ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ବାହାଡ଼ାଝୋଲା ହାଟକୁ ମୁଢ଼ି ନେଇଥାଏ । ସେଠୁ ମୋଠାରୁ ଦାବିପତ୍ର ଆଣି ବାଣ୍ଟେ ।

(୭୩) ଭାଇଗ ସାହୁ : ସେ ନୟାଗଡ଼ ପ୍ରଜାମଣ୍ଡଳର କର୍ମୀ ଥାଇ ୪୦ ମସିହାରେ ସଦାଶିବ ସାହୁ ବାହାଡ଼ାଝୋଲାଙ୍କର ଟଙ୍କା ନ ଦେବାରୁ ତାଙ୍କର ଗୋଟିଏ ଗାଇ ବରୁଆଁବାଡ଼ିର ଦୁର୍ଗାମାଧବ ଦେଓ ନିଲାମ ନେଲେ । ନିଲାମ ଗାଇ ସାଙ୍ଗରେ ବାଞ୍ଛାନିଧି ସେନାପତି, ମୁଁ, କୁବେର ସାହୁ, ସୁଦର୍ଶନ ପୃଷ୍ଟି, ଚନ୍ଦ୍ରମଣି ସାହୁ, ସଦାଶିବ ସାହୁ, ସର୍ବେଶ୍ୱର କର, ମାଧବ ସେଠୀ, କ୍ଷେତ୍ର ସୁବୁଦ୍ଧି ପ୍ରଭୃତି ବହୁତ ପ୍ରଜାମଣ୍ଡଳ କର୍ମୀ ଯାଇ ବହୁତ ଅନୁରୋଧ କଲୁ ଗାଇ ଛାଡ଼ିବା ପାଇଁ । ସେ ଛାଡ଼ି ଦେଲେ । ସେଇ ରାତ୍ରିରେ ତାଙ୍କ ମଞ୍ଚାରେ ଦେଶି କୋଡ଼ି ଦୁଇ ଗୋଟି ରଖି ସେ ଚୋରି କରିଛି ବୋଲି ମିଛରେ କହି ତାଙ୍କୁ ଜେଲ୍ ପଠେଇ ଦେଲେ । ତାଙ୍କୁ ୧ ମାସ ଜେଲ୍ ଓ ମୋତେ ବି ମାସେ ଜେଲ୍ ନେଇଗଲେ । ଜେଲ୍‌ରେ ସକାଳେ ଦୁଇଟା ସନ୍ଧ୍ୟାରେ ଦୁଇଟା ଘଣା ପକଉଥିଲୁ । ନୟାଗଡ଼ରେ ଯେଉଁ ପାର୍କ ଅଛି ପ୍ରଥମେ ଆମେ ଖୋଳିଥିଲୁ ।

(୭୪) ଭୁବାନୀ ଅଧିକାରୀ : ସେ ପ୍ରଜାମଣ୍ଡଳର କର୍ମୀ ଥିଲେ । ପାଞ୍ଚ ଆଇନ ବିରୁଦ୍ଧ ପ୍ରଚାର ପତ୍ର ବାଣ୍ଟିଲାବେଳେ ସେ ଆରେଷ୍ଟ ହେଲେ । ତା'ପରଦିନ ଆରେଷ୍ଟ କରି ନେଲାବେଳେ ମୁଁ, ବାଞ୍ଛାନିଧି ସେନାପତି, କୁବେର ସାହୁ, ଭୁବନୀ ବେହେରା ହାଟରେ ପ୍ରଚାର କରି କହିବାରୁ ଆଦିବାସୀ ଲୋକ ବାହାଡ଼ାଝୋଲାରେ ରହିଗଲେ । ସେଠି ହଜାର ହଜାର ଲୋକ ସ୍ଲୋଗାନ୍ ଦେବାରୁ ନୟାଗଡ଼ରୁ ଅର୍ଡର ଆସିଲା, ପୋଲିସ୍ ଆମକୁ ଛାଡ଼ିଦେଲା ।



## ସଂଗ୍ରାମୀ ପରିବାର କଥା

ଆମ ଘରେ ମୋ ମା' ଚନ୍ଦ୍ରାବତୀ, ବାପା ପାଣୁ ବେହେରା, ମଝିଆ ଭାଇ କୃଷ୍ଣଚନ୍ଦ୍ର ବେହେରା, ସାନ ଭାଇ ରାମଚନ୍ଦ୍ର ବେହେରା ସକ୍ରିୟ ଭାବେ କାର୍ଯ୍ୟ କରୁଥିଲେ । ପୋଲିସ୍ ଆମ ଘରେ ତିନି ତିନି ଥର ସର୍ଚ୍ଚ କରି ଚରଖା ଭାଙ୍ଗିଦେଲା । ତେଲ ଢାଳିଦେଲା । ଏତେ ନଷ୍ଟ ସତ୍ତ୍ୱେ ମୋ ବାପା କିମ୍ବା ମା' କେବେ ମୋତେ ବାରଣ କରୁନଥିଲେ । କିମ୍ବା କୌଣସି ପ୍ରଜାମଣ୍ଡଳ କର୍ମୀ ଗଲେ ରୋଷେଇ କରି ଦେବାକୁ କୁଣ୍ଠାବୋଧ କରୁନଥିଲେ । ମା' ଏବଂ ବାପାଙ୍କର ସାହାଯ୍ୟ ଯୋଗୁଁ ୪୭ ମସିହା ଯାଏ ପୂରା ସମୟ ଦେଇ କାମ କରୁଥିଲି ।

୧୯୩୮ ମସିହାଠାରୁ ନୂଆଗାଁ ଥାନା କମିଟିର ସଭାପତି ଥାଇ ପ୍ରତି ଗାଁ ବୁଲି କର୍ମୀମାନଙ୍କୁ ଯୋଗାଡ଼ କରୁଥିଲି । କଷ୍ଟି ଡାକୁଆର ଶ୍ରାଦ୍ଧ ଦିବସ କରେଇଥିଲି । ସାରଙ୍ଗଧର ଦାସ, ବିଶ୍ୱନାଥ ପଣ୍ଡିତ, ଧୂଳୀଶ୍ୱର ବସ୍ତିଆ ପ୍ରମୁଖ ଶ୍ରମିକ ଓ ଜନନେତାମାନେ ଆମ ଗାଁକୁ ସମସ୍ତେ ଯାଇଥିଲେ । ୫୦୦୦ ଲୋକଙ୍କୁ ନେଇ ସଭା ତଥା ଖାଇବା ବ୍ୟବସ୍ଥା ଯୋଗାଡ଼ ମୁଁ କରେଇଥିଲି । ଗାଁ ଗାଁରେ ଆମେ ଗ୍ରାମ ପଞ୍ଚାୟତ କରେଇଥିଲୁ । ପ୍ରଜାଙ୍କର କେଶ୍ କୋର୍ଟ କଚେରୀକୁ ଗଲାନି । ଆପଣାଛାଏଁ ରେଗୁଲେସନ ଉଠିଗଲା । ୫.୧.୧୯୩୯ରେ ରଣପୁରରେ ବେଜରଗେଟ ହତ୍ୟା ହେଲା, ସେହିଦିନକୁ ନୟାଗଡ଼ର ବାଞ୍ଛାନିଧି ସେନାପତି, କୁବେର ସାହୁ, ନରସିଂହ ନନ୍ଦ, ଭରତ ନାୟକଙ୍କୁ ରାଜା ଆରେଷ୍ଟ କରି ନୟାଗଡ଼କୁ ଆଣିଥିଲେ । ମୋ ନେତୃତ୍ୱରେ ପ୍ରାୟ ହଜାର ହଜାର ଲୋକ ନେଇ ମୁଁ ଉକ୍ତ ସଭାକୁ ଆସିଥିଲି । ସଭାରେ ୧୦ ରୁ ୧୫ ହଜାର ଲୋକ ଜମା ହୋଇଥିଲେ । ଉକ୍ତ ସଭାର ନିଷ୍ପତ୍ତି କ୍ରମେ ବନ୍ଦୀମାନଙ୍କୁ ଛାଡ଼ି ଦିଆଗଲା ।

୧୯୪୦ ମସିହାରେ ମିଥ୍ୟା କାଠ କେଶ୍ କରି ମୋତେ ୧ ମାସ ଜେଲ୍ ଏବଂ ୨୦ ଟଙ୍କା ଜୋରିମାନା ହେଲା । ମୁଁ ଜେଲରେ ଥିବାବେଳେ ମୋର ବଡ଼ ପୁଅ ପୂର୍ବତନ ପରିବହନ ଓ ଖାଦ୍ୟ ଯୋଗାଣ ମନ୍ତ୍ରୀ ଭାଗବତର ଜନ୍ମ ହୋଇଥିଲା ।

୧୯୪୨ ମସିହାରେ ୧୨୦ ଦଫାରେ ମୋତେ ଗିରଫ କରି ନେଇ ୧ ବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା । ମେ ମାସ ୧୪ ତାରିଖ ରାତି ୭ଟା ବେଳେ ମୋତେ କନେଷ୍ଟବଳ ଜୋତା ପିନ୍ଧି ବହୁତ ଚକଟୁଥିଲା । ୨୯.୧୦.୧୯୪୨ ମସିହାରେ ମୋତେ ବିମା ଖାଁ କନେଷ୍ଟବଳ ୨୦ ବେତ ମାରିଲା । ୪୨ ମସିହାରେ ମୋ ବାପାଙ୍କୁ ୧୫ ଦିନ ଜେଲ୍ ଦିଆଗଲା ।

୧୯୪୦ ମସିହାରେ ମାର୍ଗଶୀର ମାସକୁ କନ୍ଧମାଳ ନିର୍ବାଚନ ମଣ୍ଡଳୀକୁ ମୁଁ ପ୍ରଚାର କରିବା ପାଇଁ ଯାଇଥିଲି । ଟିକାବାଲିରେ ହରେକୃଷ୍ଣ ମହତାବଙ୍କ ସାଙ୍ଗରେ ଅନ୍ୟ କର୍ମୀ ଏବଂ ମୁଁ ଥାଇ ଆଦିବାସୀ ଏରିଆରେ ପ୍ରଚାର କରିଥିଲୁ । ସେଥିରେ କଂଗ୍ରେସର ଉମାଚରଣ ପଟ୍ଟନାୟକ ଜିତିଲେ, କନିକା ଟିକାୟତ ହାରିଲା ।

୧୯୪୫ ମସିହାରେ ଇଲେକସନ୍ ପ୍ରଚାରରେ ବରହମପୁର ଯାଇ ସେଠାରୁ ବିଶ୍ୱନାଥ ଦାସ, ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପାଇଁ ମୋତେ ରାୟଗଡ଼ା ପଠାଗଲା । ସେଠି ବି ରାଧାକୃଷ୍ଣ ବିଶ୍ୱାସରାୟ ଜିତିଥିଲେ । ମୁଁ ବିଭିନ୍ନ ଯାଗାକୁ ଯାଇ କଂଗ୍ରେସକୁ ଇଲେକସନ୍ ପ୍ରଚାରରେ ସାହାଯ୍ୟ କରିଥିଲି ।

ଆମର ଗଡ଼ଜାତ ଶାସନରେ ସବୁପ୍ରକାର ବେଠି କରାଯାଉଥିଲା । ଯଥା – ଜଙ୍ଗଲରୁ ନିଆଁ ଲିଭେଇବା, ସଡ଼କ ବେଠି, ବିଟ୍ ପାଳି ଆଦି ବିଭିନ୍ନ ପ୍ରକାର ବେଠି ଥିଲା । ଜଙ୍ଗଲରୁ ଲୋକେ କଣି ବି ଆଣୁନଥିଲେ । ଚାରଣା ପଇସା ଦେଲେ ୧୦୦ ବାଉଁଶ ପାସ ମିଳୁଥିଲା । ୨୮.୬.୩୮ ମସିହାରେ ଓଡ଼ଗାଁଠାରେ କର୍ମୀମାନଙ୍କ ବୈଠକରେ ନାରାୟଣ ନନ୍ଦଙ୍କୁ ଅସ୍ଥାୟୀ ଭାବରେ ସଭାପତି ନିଯୁକ୍ତ କରାଗଲା । ୨୯.୬.୩୮ ଦିନ ବୋଲଗଡ଼ଠାରେ ତଦନ୍ତ କମିଶନଙ୍କ ପାଖରେ ସାକ୍ଷୀ ଦେବାପାଇଁ ମୁଁ ଆସିଥିଲି । ନାରାୟଣ ନନ୍ଦ ପ୍ରଭୃତି ବହୁତ କର୍ମୀ ଆସିଥିଲେ । ମୋ ନାମରେ ଗୋଟିଏ ମିଥ୍ୟା କେସ୍ କରାଗଲା । ପ୍ରଜାମଣ୍ଡଳର ୯.୯.୩୮ ଭାଗବତ ପୂର୍ଣ୍ଣମୀଦିନ ଓଡ଼ଗାଁରେ ବାଞ୍ଛାନିଧି ସେନାପତିଙ୍କୁ ସଭାପତିରୂପେ ନିଯୁକ୍ତ କରାଗଲା । ନୟାଗଡ଼ରେ ଗାଈ ମଇଁଷି ଚରିବା ପାଇଁ ଚରାକର ଆଦାୟ କରାଯାଉଥିଲା । ଚରାକର ନଦେବା ପାଇଁ ପ୍ରଜାମଣ୍ଡଳ ତରଫରୁ ଆମେମାନେ ପ୍ରଚାର କଲୁ । ସଦାଶିବ ସାହୁଙ୍କର ଗୋଟିଏ

ଗାଈ ୧୯.୧୦ ରେ କାଠଦିଆ ହୋଦା କରାଗଲା । ୨୦.୧୦ ରେ ଉକ୍ତ ଗାଈ ଦୁର୍ଗାମାଧବ ଦେଓ ବେରୁଆଁରୁ ବାଡ଼ି ନିଲାମ ନେଲେ । ତାଙ୍କୁ ଗାଈ ଛାଡ଼ିବା ପାଇଁ ଅନୁରୋଧ ସତ୍ତ୍ୱେ ସେ ନ ଛାଡ଼ିବାରୁ ବାଞ୍ଛାନିଧି ସେନାପତି, ପ୍ରଜାମଣ୍ଡଳର ସଭାପତି ସହ ମୁଁ ଏବଂ ଅନେକ କର୍ମୀ ପ୍ରଭୃତି ଯାଇ ବରୁଆଁବଟି ସଭା କଲୁ । ସଭାରେ ବସିବା ପାଇଁ ଭାଇଗ ସାହୁ ଦିଖଣ୍ଡ ଖଜୁରୀ ପଟି ପକେଇ ଦେଲେ । ଦୁର୍ଗାମାଧବ ଦେଓ ଦୁଇଟି କୋଡ଼ି ଆଣି ଭାଇଗ ସାହୁ ଘରେ ମଞ୍ଚାରେ ରଖିଦେଇ ତା'ପରଦିନ ମିଥ୍ୟା ଚୋରି କେଶ୍ ଦେଲେ, ସେଥିରେ ଭାଇଗ ସାହୁଙ୍କୁ ୨ ମାସ ଜେଲ୍ ହେଲା । ୧୯.୧୨.୩୮ରେ କୁମ୍ଭାପଡ଼ାଠାରେ ପ୍ରଜାମଣ୍ଡଳର ଅଧିବେଶନ ହୋଇ ରାଜାଙ୍କର ରେଗୁଲେସନ ବିରୁଦ୍ଧରେ ଆନ୍ଦୋଳନ କରିବା ପାଇଁ ଠିକ୍ ହେଲା । ତା'ପରଦିନ ବାହାଡ଼ା ହାଟରେ ପ୍ରଚାର ପତ୍ର ବାଣ୍ଟିଲା ବେଳେ ଦାଶରଥି ପ୍ରଧାନ ଏବଂ ଭୁବନି ଅଧିକାରୀଙ୍କୁ ଗିରଫ କରାଗଲା । ଆମେ ପ୍ରତିବାଦ କରିବାରୁ ତାଙ୍କୁ ବାଟରେ ଛାଡ଼ିଦେଲେ । ତା' ପରଦିନ ବାହାଡ଼ାଝୋଲାଠାରୁ ବାହାରି ୩ ଦିନ ଭିତରେ ଦେଉଳି ମାଳିସାହି ମେଘମାଳ ତଣ୍ଡା ସଭା ଭୋବନୀପୁର ମୌଜା ପାଖରେ, ତା'ପରଦିନ କୋରଡ଼ା ମୌଜାଠାରେ ସଭା କରିଥିଲୁ । ମୁଁ ସକ୍ରିୟ ଭାବେ ଅଂଶଗ୍ରହଣ କରି କାର୍ଯ୍ୟ କରିଥିଲି । ନୟାଗଡ଼ର ପ୍ରତ୍ୟେକ ଆଦୁ ଶୋଭାଯାତ୍ରାରେ ହଜାର ହଜାର ଲୋକ ଆସି ପହଞ୍ଚିଲେ । ମୁଁ ବାହାଡ଼ାଝୋଲାରୁ ପତାକା ନେଇ ଏବଂ ନୟାଗଡ଼କୁ ସୁବୁଦ୍ଧିବାବୁ ଆସିଥିଲୁ । ତୁଳସୀପୁରଠାରୁ ମୋତେ ଜନାର୍ଦ୍ଦନ ସାହୁ କହିଲେ, ଆଦିବାସୀ ପିଲାକୁ ପତକା ଦେଇଦେବେ । ତାଙ୍କର ଭଲ କର୍ମୀ ଥିବାରୁ ମୋତେ ମନାକଲେ । ମୁଁ କହିଲି ଭାରତର ସ୍ୱାଧୀନତା ପଳେଇଯିବ । ସେଠାରୁ ରାଜି ସଭାକୁ ଆସିଲେ ଅଂଳା କାହାଣ ଗୁଣଖିଆ କାଠ ଛାଡ଼ କରିବାକୁ କହିଲ ବନ୍ଦୀମାନଙ୍କୁ ଛାଡ଼ିଦେବା ପାଇଁ ବସିବାରୁ ଆମେ ସବୁ ଫେରିଗଲୁ । ପଲିଟିକାଲ ଏଜେଣ୍ଟକୁ ରଣପୁରର ଫାୟାରିଙ୍ଗ କରିଥିଲୁ । ବିନାୟକ ମିଶ୍ର କୁରାଳ ଆମ ଘରେ ଖାଇବା ପାଇଁ ବାଢୁଥିଲ ରଘୁନାଥ ପଟ୍ଟନାୟକ କନେଷ୍ଟବଳ କୁଞ୍ଜିଆ ଚୌକିଆ ଡାକିନେଇ ମାରି ଶାଖି ନେଇ ଦାସ ମହାରଣା ତୋଟାରେ ପକେଇଦେଲେ । ମୁଁ ଏ କଥା ବାଞ୍ଛାନିଧି ସେନାପତିଙ୍କୁ କହିବାକୁ ବାହାଡ଼ାଝୋଲା ଗଲି । ସେମାନେ ଖବର ପାଇଲେ ମୁଁ ଆଇଛି, ଖବର ଦେବାକୁ ତାକୁ ଛାଡ଼ି ମୋତେ ପିଟିବାକୁ ମୋ ପଛରେ ଲାଗିଲେ । ବାହାଡ଼ାଝୋଲା ମହେଶ୍ୱର

ସୁବୁଦ୍ଧି, ରାଧାକୃଷ୍ଣ ମହାପାତ୍ର, ଲକ୍ଷ୍ମଣ ସାହୁ ପ୍ରଭୃତି ୫୦ ଜଣ ଆସି ମୋତେ ଗାଁଯାଏ ଆଣି ଛାଡ଼ି ଗଲେ । ସେ ରାଗରେ ୪୨ ମସିହାରେ ଢୋଡା ପିନ୍ଧି ମୋତେ ଚକଟିଲା । ସେହି ସମୟରେ ଓଡ଼ଗାଁଠାରୁ ଶୁକ୍ର ବେହେରାଙ୍କୁ ନଅର ପାଖରେ ବାଡ଼େଇ ବାଡ଼େଇ ପକେଇଦେଲେ । ଖାଲିସ ନେଇ ତା ଗାଁରେ ପକେଇ ଦେଲା । ତାକୁ ରାମ ମହାନ୍ତି ପ୍ରଭୃତି ଡାକ୍ତରଖାନାକୁ ଆଣୁଥିଲେ, ବାଟରୁ ତାଙ୍କୁ ଢେଲେ ନେଇଗଲେ । ଏମାନେ ସତକକୁ ଲୋକ ଦେଇ ନାହାଁନ୍ତି କନେଷ୍ଟବଳ ମୋ ବାପା ଏବଂ କକାଙ୍କୁ ଗାଈଗୋରୁ ପରି ବାଡ଼ଉଥାଏ । ମୁଁ ଦେଖୁଥାଏ । ମୁଁ ନିଜ ଜଙ୍ଗଲକୁ ନିଆଁ ଲିଭେଇବାକୁ ଯାଇଛି । ଆଡ଼ି ରାଜାମାନେ ପଟ୍ଟାଭାଡ଼ିରେ ବସିବେ । ଲୋକମାନେ ୧୦ ମାଇଲ ଛାଡ଼ି ବସିବେ । ସେପଟୁ ଲୋକ ଡାଳିମାରି ମାରି ଏପଟ ଆସିବେ ଏପଟ ଲୋକ ସେପଟେ ଯିବେ । ବାଉଁଶକୁ ଖିଲ ରଖି ଗୁରିବେଢ଼ା ବୁଲୁଥାଉ । ଶତକ ବେଠି ମାପ ଅନୁସାରେ ହେଉଥିଲା । ଯାହା ଭାଗକୁ ଯାହା ପଡ଼ିଲା, ସେ ଆଣି ଦେବ ଏବଂ ଅଢ଼େଇ ବରଣ ଧାନଗାଡ଼ି ୧୦ ଟଙ୍କା ଥିଲା । ଶଗଡ଼ରେ ଧାନ ନେଇ ଆସିବାରେ ୧୪ ଟଙ୍କା ବେଲଗୁଣରେ ୮ ଟଙ୍କାରେ ବିକ୍ରି କରୁ । ଧାନ ବସ୍ତା ହେଲେ ବି ଲୋକ ଖାଇବାକୁ ପାଉନଥିଲେ । ଏସବୁ ଦୃଷ୍ଟିରୁ ଆମେ ମହାତ୍ମାଗାନ୍ଧିଙ୍କ ଡାକରାରେ ଆନ୍ଦୋଳନ କଲୁ ।



# ମୋ ପୁଅ ଭାଗବତ

ସାମାଜିକ ବିପ୍ଳବ ଓ ପରିବର୍ତ୍ତନ ପାଇଁ ସରକାରୀ ଚାକିରୀକୁ ତୁଛ କରି ୧୯୬୦ ଦଶନ୍ଧିରେ ଓଡ଼ିଶାରେ ଯେଉଁ କେତେଜଣ ଉଦୀୟମାନ ଉଚ୍ଚଶିକ୍ଷା ଡିଗ୍ରୀଧାରୀ ସମାଜବାଦୀ ଓ ଶ୍ରମିକ ଆନ୍ଦୋଳନର ଅନିଶ୍ଚିତ ଅମା ଅନ୍ଧକାର ଗର୍ଭକୁ ପ୍ରଚଣ୍ଡ ଆତ୍ମବିଶ୍ୱାସ ରଖି ଲମ୍ଫ ପ୍ରଦାନ କରିଥିଲେ 'ଭାଗବତ' ଥିଲା ସେମାନଙ୍କ ମଧ୍ୟରୁ ଅନ୍ୟତମ ଓ ଅନନ୍ୟ । ଯଥାର୍ଥରେ ସେ ଥିଲା 'ଓଡ଼ିଆ ମାଟିର ଲଢୁଆ ପୁଅ' । ଓଡ଼ିଶା ଏବଂ ଭାରତବର୍ଷର ସାମାଜିକ ନ୍ୟାୟ ଆନ୍ଦୋଳନ, ଶୋଷିତ, ନିର୍ଯାତିତ, ନିପୀଡ଼ିତ, ଶ୍ରମିକ, କୃଷକ, ଚାଷୀ ମୂଲିଆ ସଂଗଠନ ସହ ସେ ନିବିଡ଼ ଭାବେ ସଂଶ୍ଳିଷ୍ଟ ଥିଲା । ଲୋକନାୟକ ଜୟପ୍ରକାଶ ନାରାୟଣ, ଡଃ ରାମମୋହନ ଲୋହିଆ ପ୍ରମୁଖ ଗଣତାନ୍ତ୍ରିକ ସମାଜବାଦର ପ୍ରବକ୍ତା ଓ ନେତା ଥିଲେ ତା'ର ଆଦର୍ଶ, ତାରି ପ୍ରବଳ ଉଦ୍ୟମ, ଚାପ, ଦାବୀ ଓ ନିରନ୍ତର ଉଦ୍ୟମ ଫଳରେ ଓଡ଼ିଶାରେ ଜିଲ୍ଲା ସଂଖ୍ୟା ବୃଦ୍ଧିବେଳେ 'ନୟାଗଡ଼' ଏକ ଜିଲ୍ଲା ରୂପେ ସ୍ୱୀକୃତି ପାଇଲା । ନୟାଗଡ଼ବାସୀଙ୍କର ସେ ଥିଲା ସୁଖ ଦୁଃଖର ସାଥୀ । ସେମାନଙ୍କୁ ସେ ପ୍ରାଣଭରି ଭଲ ପାଉଥିଲା । ତା'ର ସାଂଗଠନିକ ଦକ୍ଷତା ଓ ନିଃସ୍ୱାର୍ଥପର ସେବାପାଇଁ ନୟାଗଡ଼ବାସୀ ତାକୁ ପାଞ୍ଚଥର ବିଧାନସଭାକୁ ନିର୍ବାଚିତ କରିଥିଲେ ।

'ଭାଗବତ' ମୋର ବଡ଼ ପୁଅ । ତା'ର ଜନ୍ମ ୧୯୪୦ ମସିହା ମାର୍ଚ୍ଚ ୨ ତାରିଖରେ । ସେ ମୋର ପ୍ରଥମ ସ୍ତ୍ରୀ 'ବିମଳା' ଗର୍ଭରୁ ଜାତ । ବାଲ୍ୟକାଳରୁ ତା'ର ମାତୃବିୟୋଗ ଘଟିବାରୁ ମୁଁ ଦ୍ୱିତୀୟ ବିବାହ କରିଥିଲି । ତାଙ୍କ ନାମ 'ରାଧାମଣୀ । ସେ ଭାଗବତକୁ ନିଜ ଜନ୍ମିତ ପୁତ୍ରଙ୍କଠାରୁ ଅଧିକ ସ୍ନେହ କରୁଥିଲେ । ତୁଳସୀ ଦୁଇପତ୍ରରୁ ବାସିଲା ଭଳି ପିଲାଟି ବେଳୁ ଭାଗବତର ସଂଗ୍ରାମୀ ପ୍ରତିଭା ବିକଶିତ ହୋଇଥିଲା । ସେ ଜଣେ ମେଧାବୀ ଛାତ୍ର ମଧ୍ୟ ଥିଲା । ମାଇନର ସ୍କୁଲରେ ପଢ଼ିଲାବେଳେ ସେ ବିଭିନ୍ନ ପ୍ରତିଯୋଗିତାରେ କୃତିତ୍ୱ ଅର୍ଜନ କରିଥିଲା । ତା'ର ଅପର ପ୍ରାଇମେରୀ ଶିକ୍ଷା ଏବଂ ମାଇନର ଶିକ୍ଷା ବାହାଡ଼ାଝୋଲାଠାରେ ହୋଇଥିଲା । ଓଡ଼ଗାଁ ରଘୁନାଥ ବିଦ୍ୟାପୀଠରେ ସେ ହାଇସ୍କୁଲ ଶିକ୍ଷା ଲାଭ କରିଥିଲା ।

୧୯୫୯-୬୦ରେ ରେଭେନ୍ସା କଲେଜରେ ତା'ର ନାଁ ଲେଖାଇଥିଲି । ସେତେବେଳେ ସାଧାରଣତଃ ଷଷ୍ଠ ବର୍ଷର ଛାତ୍ରମାନେ ରେଭେନ୍ସା କଲେଜର ସଭାପତି ହୋଇଥାନ୍ତି, ମାତ୍ର ଭାଗବତ ଏହାର ଏକ ବ୍ୟତିକ୍ରମ । ୫ମ ବର୍ଷରେ ଛାତ୍ର ହୋଇ ମଧ୍ୟ ସେ ସଭାପତି ନିର୍ବାଚିତ ହୋଇଥିଲା । ତାରି ବଳିଷ୍ଠ ନେତୃତ୍ୱ ଓ ଦିଗ୍‌ଦର୍ଶନ ୧୯୬୪ ମସିହାରେ ଓଡ଼ିଶାର ଛାତ୍ର ଆନ୍ଦୋଳନକୁ ଐତିହାସିକ ରୂପ ଦେଇଥିଲା । ସେ ଥିଲା ଆନ୍ଦୋଳନର ନାୟକ, ଏହି ଆନ୍ଦୋଳନର ପ୍ରଭାବ ଏପରି ସୁଦୂରପ୍ରସାରୀ ଓ ପ୍ରଭାବଶାଳୀ ହୋଇଥିଲା ଯଦ୍ୱାରା ଭାରତର ତତ୍‌କାଳୀନ ସ୍ୱରାଷ୍ଟ୍ର ମନ୍ତ୍ରୀ ଗୁଲଜାରିଲାଲ ନନ୍ଦା ଓଡ଼ିଶା ଆସି ଭାଗବତ ଓ ଅନ୍ୟ ଛାତ୍ରନେତାଙ୍କ ସହ ଆଲୋଚନା କରି ସମସ୍ୟାର ସମାଧାନ କରିଥିଲେ ।

ଓଡ଼ିଶାର ଶ୍ରମିକ-କୃଷକ ଆନ୍ଦୋଳନ ଓ ଗଡ଼ଜାତ ପ୍ରଜା ଆନ୍ଦୋଳନରେ ସମାଜବାଦୀ ମାନଙ୍କର ଭୂମିକା ଉଲ୍ଲେଖନୀୟ । ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିବାବେଳେ ଭାଗବତ ସମାଜବାଦୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିଲା । ଏଇ ସମୟରେ ସେ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଓ ସମାଜବାଦୀ କୃଷକ-ଶ୍ରମିକ ସଂଗଠକ ଓ ନେତା ସୁରେନ୍ଦ୍ରନାଥ ଦ୍ୱିବେଦୀ, ବାଙ୍କ ବିହାରୀ ଦାସ, ପ୍ରସନ୍ନ ଦାସ, ରବୀନ୍ଦ୍ର ମୋହନ ଦାସ, ବିଶ୍ୱନାଥ ପଣ୍ଡିତ, ନିଶାମଣି ଖୁଣ୍ଟିଆ, ରବି ରାୟ, ଗୋକୁଳାନନ୍ଦ ବେହେରା, ପ୍ରଦୀପ୍ତ କିଶୋର ଦାସ, ବନମାଳୀ ମହାରଣା, ଧୂଳୀଶ୍ୱର ବଣ୍ଡିଆ, ରାଜକିଶୋର ସାମନ୍ତରାଏ, ସମରେନ୍ଦ୍ର କୁଣ୍ଡୁ ପ୍ରମୁଖଙ୍କ ଘନିଷ୍ଠ ସଂପର୍କରେ ଆସିଥିଲା । ଛାତ୍ର ଆନ୍ଦୋଳନ ତଥା ଶ୍ରମିକ ଆନ୍ଦୋଳନରେ ତା'ର ଘନିଷ୍ଠ ସାଥି ଥିଲେ ଯୁବ ସମାଜବାଦୀ କୃଷ୍ଣଚନ୍ଦ୍ର ପାତ୍ର । ପ୍ରଖ୍ୟାତ ଔପନ୍ୟାସିକ, ସମାଜବାଦୀ ଚିନ୍ତକ, ଶିକ୍ଷାବିତ୍ ବିଭୁତି ପଟ୍ଟନାୟକ ତାକୁ ଏ ଦିଗରେ ବରାବର ପ୍ରେରଣା ଏବଂ ଉତ୍ସାହ ପ୍ରଦାନ କରିଥିଲେ । ଅର୍ଥନୀତିରେ କୃତିତ୍ୱ ସହ ଏମ୍.ଏ. ପାଶ୍ କଲାପରେ ତାକୁ ଜୟପୁର କଲେଜର ଅଧ୍ୟାପକ ଚାକିରି ମିଳିଥିଲା । ସାଧନା ପାଇଁ ଯିଏ ସମର୍ପିତ, ସଂଘର୍ଷ ଯାହାର ଜୀବନର ବ୍ରତ, ଅନ୍ୟାୟ, ଅନୀତି, ଶୋଷଣ, କଷଣ ବିରୁଦ୍ଧରେ ଲଢ଼େଇ କରିବା ଯାହାର ପଣ ତା' ନିକଟରେ ଚାକିରି ପ୍ରଲୋଭନ, ବ୍ୟକ୍ତିଗତ ଧନ ଅର୍ଜନର ଲାଳସା ହାର ମାନିଥାଏ । ତାହାହିଁ ଘଟିଥିଲା ଭାଗବତ ଜୀବନରେ । ଓଡ଼ିଶା ଶ୍ରମିକ ଆନ୍ଦୋଳନର ଉଜ୍ଜ୍ୱଳ ତାରକା ବିପ୍ଳବୀ ଧୂଳୀଶ୍ୱର ବଣ୍ଡିଆଙ୍କର ଏକ ଦାରୁଣ ରାସ୍ତା ଦୁର୍ଘଟଣାରେ ବିୟୋଗ (ଏପ୍ରିଲ ୨୭, ୧୯୬୬) ଘଟିବା ଫଳରେ

ସମାଜବାଦୀ ଶ୍ରମିକ ଆନ୍ଦୋଳନର ଅନ୍ୟତମ ରଥୀ ରାଜକିଶୋର ସାମନ୍ତରାଏଙ୍କୁ ପାର୍ଟି ନିର୍ଦ୍ଦେଶରେ ରାଉରକେଲା ଯିବାକୁ ପଡ଼ିଲା ଏବଂ ସେ ରାଉରକେଲା ମଜଦୂର ସଭା, ଓଡ଼ିଶା ସିମେଣ୍ଟ ମଜଦୂର ସଂଘ ରାଜଗାଙ୍ଗପୁର ଇତ୍ୟାଦି ସଂଗଠନର ଦାୟିତ୍ୱ ନେଲେ । ଭାଗବତ ଚୌଦ୍ୱାର, ବାରଙ୍ଗ ଏବଂ ତାଳଚେର କୋଇଲା ଅଞ୍ଚଳର ହିନ୍ଦ୍ ମଜଦୁରସଭା ସଂଗଠନର ଦାୟିତ୍ୱ ନେଲା । ଓ.ଟି.ଏମ୍. (ଚୌଦ୍ୱାର) ଶ୍ରମିକ ସଂଗଠନର ଦାୟିତ୍ୱ ନିର୍ବାହ କରୁଥିବାବେଳେ ଘରୋଇ ଭାବେ ସେ ଆଇନ ଅଧ୍ୟୟନ କରିଥିଲା ଏବଂ ସମାଜବାଦୀ ନେତା ତତ୍କାଳୀନ ପାର୍ଲାମେଣ୍ଟ ସଭ୍ୟ ବିଶିଷ୍ଟ ଆଇନଜୀବୀ ଶ୍ରୀନିବାସ ମିଶ୍ରଙ୍କ ସହଯୋଗ ଓ ପ୍ରେରଣାରେ ଏଲ୍ଏଲ୍.ଏମ୍. ପାଶ କରିଥିଲା । ଆଇନ ପଢ଼ିବା ପରେ ବାର କାଉନ୍‌ସିଲ୍ ପକ୍ଷରୁ ଏକ ପ୍ରତିବନ୍ଧକ ସୃଷ୍ଟି ହେଲା ଯେ ଘରୋଇ ଭାବେ ପାସ୍ କରିଥିବା ବ୍ୟକ୍ତି ହାଇକୋର୍ଟରେ ପ୍ରାକ୍‌ଟିସ କରିପାରିବେ ନାହିଁ । ଭାଗବତ ଏହା ବିରୁଦ୍ଧରେ ଅପିଲ୍ କରି ସଫଳ ହୋଇଥିଲା । ଓକିଲାତି କରିବା ପାଇଁ ତା' ନିକଟରେ ସମୟ ଖୁବ୍ କମ୍ ଥିଲା, ଶ୍ରମିକ ଆନ୍ଦୋଳନ, ସମାଜବାଦୀ ଆନ୍ଦୋଳନ ଓ ପ୍ରତ୍ୟକ୍ଷ ରାଜନୀତିରେ ସେ ଘନିଷ୍ଠଭାବେ ସଂପୃକ୍ତ ହୋଇପଡ଼ିଲା ।

ଏକ ନିର୍ଭୀକ ସେନାପତି ଭଳି ସେ ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହେଉଥିଲା । ବିଜୟମାଳାରେ ବିଭୂଷିତ ହୋଇ ସେ ଆତ୍ମଗର୍ବ ଓ ଆତ୍ମବଡ଼ିମା ପ୍ରକାଶ କରୁନଥିଲା କି ପରାଜୟ ଗ୍ଲାନିରେ ଭାଙ୍ଗିପଡୁନଥିଲା । ଏହା ହିଁ ହେଉଛି ତା' ବ୍ୟକ୍ତିତ୍ୱର ବିଶେଷତ୍ୱ । ୧୯୭୧ରେ ପ୍ରଜାସମାଜବାଦୀ ପାର୍ଟି ଟିକଟରେ ଲଢ଼ି ସେ ନିର୍ବାଚନ ରାଜନୈତିକ ଜୀବନ ଆରମ୍ଭ କରିଥିଲା । ଏଥିରେ ବିଫଳ ହୋଇଥିଲା, ମାତ୍ର ପରବର୍ତ୍ତୀ ନିର୍ବାଚନ ଗୁଡ଼ିକ ପାଇଁ ତାକୁ ଏହା ଅପୂର୍ବ ପ୍ରେରଣା ଯୋଗାଇଥିଲା । ଇନ୍ଦିରା ଗାନ୍ଧୀଙ୍କ ତଥାକଥିତ ସମାଜବାଦ ଭେଳିକିରେ ସୁରେନ୍ଦ୍ରନାଥ ଦ୍ୱିବେଦୀ ପ୍ରମୁଖ ତୁଙ୍ଗ ସମାଜବାଦୀ ନେତାମାନେ ଭ୍ରମରେ ପଡ଼ି କଂଗ୍ରେସରେ ଯୋଗ ଦେଇଥିଲେ ମାତ୍ର ସମାଜବାଦୀ ପତାକାକୁ ସଗର୍ବରେ ଟେକି ଧରିବା ପାଇଁ ବିଶ୍ୱନାଥ ପଣ୍ଡିତଙ୍କ ନେତୃତ୍ୱରେ ବିଖଣ୍ଡିତ ସୋସାଲିଷ୍ଟ ଦଳକୁ ଓଡ଼ିଶାରେ ଯେଉଁମାନେ ବଞ୍ଚାଇ ରଖିଥିଲେ ସେମାନଙ୍କ ମଧ୍ୟରେ ଭାଗବତ ଅନ୍ୟତମ । ୧୯୭୪ ମସିହାରେ ସୋସାଲିଷ୍ଟ ପାର୍ଟି ଟିକେଟରେ ନୟାଗଡ଼ରୁ ନିର୍ବାଚିତ ହୋଇ ବିଧାନସଭାରେ ତା'ର ଦକ୍ଷତା ପ୍ରତିପାଦନ କରିଥିଲା । ୧୯୭୫ ମସିହା ଜୁନ୍ ୨୬ ତାରିଖରେ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ

ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରିକଲେ । ଜୟ ପ୍ରକାଶ ନାରାୟଣଙ୍କ ସମେତ ଦେଶର ପ୍ରମୁଖ ନେତାମାନଙ୍କୁ ଗିରଫ କରାଗଲା । ଓଡ଼ିଶାରେ ଗିରଫ ହୋଇ ୧୧ ମାସ କାଳ କାରାବରଣ କରିଥିବା ନେତାମାନଙ୍କ ମଧ୍ୟରେ ଭାଗବତ ଥିଲା ଅନ୍ୟତମ । ବିଧାୟକ ହୋଇ ମଧ୍ୟ ତାକୁ ଓଡ଼ିଶାର ବିଭିନ୍ନ ଜେଲରେ ରଖାଯାଇ ନାନା ନିର୍ଯାତନା ଦିଆଯାଇଥିଲା । ଜରୁରୀକାଳୀନ ଶାସନ ଉଠିଯିବା ପରେ ୧୯୭୭ରେ ଦେଶରେ ସାଧାରଣ ନିର୍ବାଚନ ହେଲା । ଜୟ ପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଜନତା ପାର୍ଟି ଗଠିତ ହେଲା । ଏହି ନିର୍ବାଚନରେ କେନ୍ଦ୍ରରେ ଏବଂ ବହୁ ରାଜ୍ୟରେ କଂଗ୍ରେସ ଶାସନର ଅବସାନ ହେଲା ଏବଂ ସେମାନଙ୍କର ଦୁର୍ଗ ଭୁଷୁଡ଼ି ପଡ଼ିଲା । ଓଡ଼ିଶାରେ ଜନତା ପାର୍ଟି କ୍ଷମତାସୀନ ହେଲା, ଭାଗବତ ୨ୟ ଥର ପାଇଁ ନୟାଗଡ଼ରୁ ବିଧାୟକ ନିର୍ବାଚିତ ହେଲା । ୧୯୮୫-୧୯୯୦ ନିର୍ବାଚନରେ ସେ ୩ୟ ଥର ପାଇଁ ନୟାଗଡ଼କୁ ନିର୍ବାଚିତ ହେଲା । ପୁନଶ୍ଚ ୧୯୯୦-୯୫ ନିର୍ବାଚନରେ ୪ର୍ଥ ଥର ପାଇଁ ନିର୍ବାଚିତ ହୋଇ ଶ୍ରୀ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ବାଣିଜ୍ୟ, ପରିବହନ ଓ ଯୋଗାଣ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ହେଲା । ୨୦୦୦ରୁ ତା'ର ଜୀବନ ନାଟିକା ଶେଷ ହେବା ପର୍ଯ୍ୟନ୍ତ ୫ମ ଥର ନୟାଗଡ଼ରୁ ବିଧାୟକ ଭାବେ ନିର୍ବାଚିତ ହୋଇଥିଲା ଏବଂ ଶ୍ରୀ ନବୀନ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସ୍କୁଲ ଓ ଗଣଶିକ୍ଷା ଭଳି ଗୁରୁତ୍ୱପୂର୍ଣ୍ଣ ବିଭାଗର ଦାୟିତ୍ୱ ତୁଲାଇ ଥିଲା । ପଛୁଆ ବର୍ଗର ଉତ୍ଥାନ ପାଇଁ ତା' ମନରେ ସତତ ଉଦ୍‌ବେଳନ ସୃଷ୍ଟି ହେଉଥିଲା । ଯେତେବେଳେ ଓଡ଼ିଶାରେ ମଣ୍ଡଳ କମିଶନ ରିପୋର୍ଟ ବିରୁଦ୍ଧରେ ନକାରାତ୍ମକ ଭାବ ସୃଷ୍ଟି ହୋଇଥିଲା ତାକୁ ସେ ନାପସନ୍ଦ କରିଥିଲା ଏବଂ ପ୍ରଚ୍ଛନ୍ନ ଭାବେ ସାମାଜିକ ନ୍ୟାୟ ଆନ୍ଦୋଳନରେ ଲଢ଼େଇ କରୁଥିବା ବ୍ୟକ୍ତି ଓ ସଂଗଠନମାନଙ୍କୁ ପ୍ରୋତ୍ସାହିତ କରୁଥିଲା । ଏଥିପାଇଁ ସେ ଜନତା ଦଳ ପରିତ୍ୟାଗ କରି ଶ୍ରୀ ଲାଲୁ ପ୍ରସାଦ ଯାଦବଙ୍କ ନେତୃତ୍ୱାଧୀନ ରାଷ୍ଟ୍ରୀୟ ଜନତା ଦଳ ଟିକେଟରେ ଭୁବନେଶ୍ୱର ପାର୍ଲାମେଣ୍ଟର ଆସନରୁ ପ୍ରତିଦ୍ୱନ୍ଦ୍ୱିତା କରି ଏକକ ଅଭିମନ୍ୟୁ ଭଳି ହାରିଯାଇଥିଲେ ବି ଲକ୍ଷ୍ୟ ଏବଂ କକ୍ଷଚ୍ୟୁତ ହୋଇ ନଥିଲା । ପରବର୍ତ୍ତୀ କାଳରେ ସେ ପୁନଶ୍ଚ ବିଜୁ ଜନତାଦଳକୁ ଫେରି ଆସିଥିଲା । ଜାତୀୟ ଓ ରାଜ୍ୟ ସ୍ତରରେ ରାଜନୀତିକ ଦୃଶ୍ୟପଟ୍ଟ ପରିବର୍ତ୍ତନରେ ସୋସିଆଲିଷ୍ଟମାନେ ବିଭିନ୍ନ ଦଳ ଓ ଆଦର୍ଶ ଭିତରେ ବିଭକ୍ତ ହୋଇଥିଲେ ବି ଭାଗବତ କଦାପି ସମାଜବାଦୀ ଆଦର୍ଶରୁ ବିଚ୍ୟୁତ୍ ହୋଇନଥିଲା । ଓ.ଟି.ଏମ୍. (ଚୌଦ୍ୱାରରୁ ଶ୍ରମିକ ଆନ୍ଦୋଳନରେ ତା'ର ଯୋଗଦାନ ପରବର୍ତ୍ତୀ କାଳରେ

ରାଜ୍ୟରେ ଜଣେ ସୁନାମ ଧନ୍ୟ ଶ୍ରମିକ ନେତାଭାବେ ତାକୁ ପ୍ରତିଷ୍ଠିତ କରିଥିଲା । ଶ୍ରୀ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ମନ୍ତ୍ରୀମାନେ କୌଣସି ଶ୍ରମିକ ସଂଗଠନର ନେତୃତ୍ୱ ନେଇପାରିବେ ନାହିଁ ବୋଲି ନିର୍ଦ୍ଦେଶନାମା ଜାରି ହେବା ଦ୍ୱାରା ସେ ହିନ୍ଦ୍ ମଜଦୁର ସଭା ସହବନ୍ଧିତ ବିଭିନ୍ନ ଶ୍ରମିକ ସଂଗଠନରୁ ଅବ୍ୟାହତି ନେଇଥିଲେ ବି ହିନ୍ଦ୍ ମଜଦୁର ସଭା ପ୍ରାଦେଶିକ ସଂଗଠନର ଉପସଭାପତି ଭାବେ ଶେଷ ଜୀବନ ପର୍ଯ୍ୟନ୍ତ ରହି ଆସିଥିଲା । ତାଳଚେର, ନାଲକୋ, ରାଉରକେଲା, ବାଲେଶ୍ୱର ଇତ୍ୟାଦି ଶିଳ୍ପାଞ୍ଚଳରେ ହିନ୍ଦ୍ ମଜଦୁର ସଭା ସଂଗଠନର କର୍ମୀ ଓ ନେତାମାନଙ୍କର ଅତ୍ୟନ୍ତ ପ୍ରିୟ ପାତ୍ର ଥିଲା ଏବଂ ବିଭିନ୍ନ କ୍ଷେତ୍ରରେ ଶ୍ରମିକ କର୍ମଚାରୀଙ୍କୁ ଦିଗ୍ ଦର୍ଶନ ଦେଉଥିଲା । ଛାତ୍ର ସମ୍ମିଳନୀରେ ଯୋଗଦାନ କରିବାକୁ ୧୯୬୨ରେ ସେ କଲମ୍ବୋ ଏବଂ ୧୯୬୭-୬୮ରେ ଇସ୍ରାଏଲ ଏବଂ ପରବର୍ତ୍ତୀ କାଳରେ ଆମେରିକା ପ୍ରଭୃତି ବିଭିନ୍ନ ଦେଶ ବିଦେଶ ଭ୍ରମଣ କରି ଅନୁଭୂତି ଅର୍ଜନ କରିଥିଲା । ସେ ଥିଲା ଅତ୍ୟନ୍ତ ସ୍ନେହୀ ଓ ବନ୍ଧୁବତ୍ସଳ । ଓଡ଼ିଶା ତଥା ଭାରତର ବିଭିନ୍ନ ପ୍ରାନ୍ତରେ ତା'ର ଅଗଣିତ ଗୁଣମୁଗ୍ଧ ସାଥି ଓ ବନ୍ଧୁ ଥିଲେ । ଆମେରିକା ଭଳି ପ୍ରବାସୀ ଭାରତୀୟଙ୍କ ମଧ୍ୟରେ ତା'ର ଅନେକ ବନ୍ଧୁ ଥିଲେ । ନିଜ ନିର୍ବାଚନ ମଣ୍ଡଳୀର ସାଧାରଣ କର୍ମୀଙ୍କଠାରୁ ଆରମ୍ଭ କରି ଶିକ୍ଷାବିତ୍, ଡାକ୍ତର, ଓକିଲ, ସମାଜସେବୀ ତାଙ୍କର ଅମାୟିକ ବ୍ୟବହାରରେ ମୁଗ୍ଧ ହେଉଥିଲେ । ସରକାରୀ ବିରୋଧି ଆସନରେ ଥିଲାବେଳେ ତା'ର ସିଂହ ଗର୍ଜନରେ ବିଧାନସଭା କକ୍ଷ ଧରି ଉଠୁଥିଲା ଓ ଶାସକଦଳ ଆତଙ୍କ ମଣୁଥିଲେ । ସେଇଭଳି ଶାସନଗାଦୀରେ ଥିଲାବେଳେ ସେ ନିର୍ଭୀକ ଭାବେ ବିରୋଧୀ ପକ୍ଷର ସାମ୍ନା କରୁଥିଲା । ସଂଘର୍ଷ ଥିଲା ତା' ଜୀବନର ମୂଳମନ୍ତ୍ର; ସାଲିସ୍ ନୁହେଁ । ମଧ୍ୟାହ୍ନର ସୂର୍ଯ୍ୟ ଦାଉଦାଉ ଜଳୁଥିବାବେଳେ ଏବଂ ପଶ୍ଚିମ ଦିଗନ୍ତକୁ ଢଳିବା ବହୁ ପୂର୍ବରୁ ମାତ୍ର ୬୨ ବର୍ଷ ବୟସରେ ଜୁନ୍ ୩ ତାରିଖ ୨୦୦୨ ମସିହାରେ ସେଇ ତେଜୋଦୀପ୍ତ ସୂର୍ଯ୍ୟ ଦୁରାରୋଗ୍ୟ କ୍ୟାନସର ବ୍ୟାଧିରେ ପୀଡ଼ିତ ହୋଇ ଅସ୍ତମିତ ହେଲା । ତା'ର ସହଧର୍ମିଣୀ ମନ୍ଦାକିନୀ ବେହେରାଙ୍କୁ ନୟାଗଡ଼ବାସୀ ବିଧାନସଭାକୁ ନିର୍ବାଚିତ କରି ପ୍ରିୟତମ ନେତାଙ୍କୁ ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିଥିଲେ ।

ଜୀବନର ଅଶେଷ ଦୁଃଖ ଯନ୍ତ୍ରଣା ଓ ଜଞ୍ଜାଳକୁ ସେ ହସିହସି ଏଡ଼ାଇ ଯାଇଥିଲା । 'ବୃତଙ୍ଗ ଜଳସେଚନ' ଯୋଜନା ତା'ର ଏକ ଅଧୁରା ସ୍ୱପ୍ନ ହୋଇ ରହିଗଲା, ଏହା ସାକାର ହେଲେ ତା'ର ଆତ୍ମା ଶାନ୍ତି ଲାଭ କରିବ ।



# ସରକାରଙ୍କ ସହ ନୟାଗଡ଼ ରାଜା ସମ୍ପାଦନ କରିଥିବା ଏଗ୍ରିମେଣ୍ଟର ନକଲ

ଯେହେତୁ ରାଜ୍ୟର ଓ ରାଜ୍ୟ ଲୋକଙ୍କର ସ୍ୱାର୍ଥଦୃଷ୍ଟିରୁ ନୟାଗଡ଼ ରାଜ୍ୟର ରାଜା ଇଚ୍ଛା କରନ୍ତି ଯେ ରାଜ୍ୟର ଶାସନ ଓଡ଼ିଶା ପ୍ରଦେଶ ଶାସନ ସଙ୍ଗେ ଅବିଳମ୍ବେ ମିଳିତ ହେଉ । ଏହା ସ୍ୱୀକୃତି ହେଉଛି ଯେ—

୧ । ନୟାଗଡ଼ ରାଜ୍ୟର ରାଜା ତାଙ୍କ ରାଜ୍ୟ ଶାସନର ସମସ୍ତ ପ୍ରକାର କ୍ଷମତା ୧୯୪୮ ସାଲ ଜାନୁୟାରୀ ୧ ତାରିଖଠାରୁ ଭାରତ ସରକାରଙ୍କୁ ଛାଡ଼ି ଦେଇଛନ୍ତି ଓ ସେହି ତାରିଖଠାରୁ ଭାରତ ସରକାର ସମସ୍ତ କ୍ଷମତା ଯେକୌଣସି ମାର୍ଫତରେ ନୟାଗଡ଼ ରାଜ୍ୟରେ ଜାରି କରିପାରିବେ ।

୨ । ଉକ୍ତ ତାରିଖଠାରୁ ରାଜ୍ୟ ଆୟରୁ ରାଜା ବାର୍ଷିକ ୬୨ ହଜାର ୮ ଶହ ଟଙ୍କା ବୃତ୍ତିସ୍ୱରୂପ ସ୍ଥାୟୀଭାବେ ପାଇବେ । ଉକ୍ତ ବୃତ୍ତି ଉପରେ କୌଣସି ଟିକସ ବସାହେବ ରହିବ । ଏହି ବୃତ୍ତିରୁ ରାଜା ତାଙ୍କ ନିଜର, ପରିବାରର, ଗୃହକରବାକରଙ୍କର, ଘର ମରାମତି ପାଇଁ ଓ ବିବାହ ଇତ୍ୟାଦିର ସମସ୍ତ ଖର୍ଚ୍ଚ ତୁଲାଇବେ । ଏ ବୃତ୍ତିର ପରିମାଣ ବଢ଼ିବ ନାହିଁ କିମ୍ବା କମିବ ନାହିଁ । ଏ ବୃତ୍ତି ରାଜା ୩ ମାସକୁ ୩ ମାସ ଆଗତୁରା ଭାରତ ସରକାରଙ୍କ ନିର୍ଦ୍ଧାରିତ ଖଜଣାଖାନାରୁ ନେଇଯିବେ ।

୩ । ଆଜି ତାରିଖରେ ରାଜାଙ୍କର ଯେଉଁ ଘରୋଇ ସମ୍ପତ୍ତି ରହିଛି, ସେ ସମ୍ପତ୍ତିରେ ତାଙ୍କର ପୂର୍ଣ୍ଣ ଅଧିକାର ରହିବ । ୧୯୪୮ ଜାନୁୟାରୀ ୧ ତାରିଖ ପୂର୍ବରୁ ସମସ୍ତ ଅଚଳନ୍ତି ସମ୍ପତ୍ତି ଓ ନଗଦ ତହବିଲ୍‌ର ହିସାବ ଭାରତ ସରକାରଙ୍କୁ ଦେବେ । ଭବିଷ୍ୟତରେ କୌଣସି ସମ୍ପତ୍ତି ରାଜାଙ୍କର ଘରୋଇ ସମ୍ପତ୍ତି ନୁହେଁ ବୋଲି ଯଦି ବିବାଦ

ଉଠେ, ତେବେ ତାହା ବିଗ୍ଭର ବିଭାଗର ଜଣେ କର୍ମକର୍ତ୍ତାଙ୍କ ବିଗ୍ଭର ପାଇଁ ଭାରତ ସରକାର ପଠାଇବେ ଓ ତାଙ୍କର ବିଗ୍ଭରରେ ସେ ବିବାଦ ନିଷ୍ପତ୍ତି ହେବ ।

୪ । ରାଜା, ରାଣୀ, ରାଜମାତା, ଯୁବରାଜ ଓ ଯୁବରାଣୀ ୧୯୪୭ ଅଗଷ୍ଟ ୧୫ ତାରିଖ ପୂର୍ବରୁ ଯେଉଁ ବ୍ୟକ୍ତିଗତ ସମ୍ମାନ ଭୋଗ କରୁଥିଲେ ତାହା ନିଜ ରାଜ୍ୟରେ ଓ ବାହାରେ ଭୋଗ କରିବେ ।

୫ । ଭାରତ ସରକାରଙ୍କ ଆଇନ ଓ ପ୍ରଚଳିତ ପ୍ରଥା ଅନୁସାରେ ରାଜାଙ୍କ ଉତ୍ତରାଧିକାରୀ ଉପାଧି ଦାବି ଓ ସମ୍ମାନ ସମସ୍ତ ଭୋଗ କରିବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି । ଭାରତ ସରକାରଙ୍କ ପକ୍ଷରୁ ଶ୍ରୀଭାପାଳ ପାନଗୁନ୍ନି ମେନନ୍ ଭାରତର ଗଭର୍ଣ୍ଣର ଜେନେରାଲଙ୍କ ପକ୍ଷରୁ ସ୍ୱାକ୍ଷର ଦେଉଛନ୍ତି ଓ ନୟାଗଡ଼ ରାଜ୍ୟର ରାଜା ତାଙ୍କ ନିଜର ଓ ଉତ୍ତରାଧିକାରୀମାନଙ୍କ ପକ୍ଷରୁ ସ୍ୱାକ୍ଷର କରୁଛନ୍ତି ।

ଏହି ଚୁକ୍ତିପତ୍ର ସ୍ୱାକ୍ଷରିତ ହେବାପରେ ଭାରତ ସରକାର ଗଡ଼ଜାତମାନଙ୍କର ସମସ୍ତ ଶାସନଭାର ଓଡ଼ିଶା ସରକାରଙ୍କଠାରେ ନ୍ୟସ୍ତ କଲେ । ଏହି ଚୁକ୍ତି ସ୍ୱାକ୍ଷରିତ ହେବାପରେ ତା ୧୪-୧୨-୪୭ ସନ୍ଧ୍ୟା ସମୟରେ ସର୍ଦ୍ଦାର ପଟେଲ ଏକ ବିରାଟ ଜନସଭାରେ ଉକ୍ତ ବିଷୟ ଘୋଷଣାକରି ସମସ୍ତଙ୍କ ମନରେ ଆନନ୍ଦ ବର୍ଦ୍ଧନ କରିଥିଲେ । ତା'ପରଦିନ ସକାଳ ୧୦ ଘଣ୍ଟା ସମୟରେ କଟକ ନାରୀ ସେବା ସଦନରେ ଗଡ଼ଜାତ ଅଞ୍ଚଳର କର୍ମୀମାନଙ୍କ ଏକ ବୈଠକରେ ପଟେଲଜୀ ଯୋଗଦେଇ ମିଶ୍ରଣ କାର୍ଯ୍ୟରେ ଗଡ଼ଜାତ ଲୋକଙ୍କର ଭୂମିକାକୁ ଭୂୟସୀ ପ୍ରଶଂସା କରି ଅପରାହ୍ନରେ ଓଡ଼ିଶାରୁ ବିଦାୟ ନେଲେ । ଓଡ଼ିଶାର ୨୬ଟି ଗଡ଼ଜାତ ମଧ୍ୟରୁ ମୟୁରଭଞ୍ଜ ମହାରାଜାଙ୍କ ବ୍ୟତୀତ ଅନ୍ୟ ସମସ୍ତ ରାଜା ଉକ୍ତ ଚୁକ୍ତିରେ ସ୍ୱାକ୍ଷର କଲେ । ମୟୁରଭଞ୍ଜର ରାଜା ବର୍ଷକପରେ ଲୋକଗ୍ଭପରେ ପଡ଼ି ବାଧ୍ୟହୋଇ ଚୁକ୍ତିପତ୍ରରେ ସ୍ୱାକ୍ଷର କଲେ ।

ପୂର୍ବ ନିର୍ଦ୍ଧାରିତମତେ ନୟାଗଡ଼ ରାଜ୍ୟ ଆସେମ୍ବ୍ଲି ବୈଠକ ତା ୨୦-୧୨-୪୭ ଦିନ ଦରବାର ହଲ୍‌ରେ ଅନୁଷ୍ଠିତ ହୋଇ ନୟାଗଡ଼ ରାଜ୍ୟ

ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ଚୁକ୍ତିରେ ନୟାଗଡ଼ ରାଜା ସ୍ୱାକ୍ଷର କରିଥିବାରୁ ଉକ୍ତ ମିଶ୍ରଣ ପ୍ରସ୍ତାବକୁ ସ୍ୱାଗତ ଜଣାଇ ପ୍ରସ୍ତାବ ଗ୍ରହଣ କରିଥିଲେ । ରାଜା ଶେଷରେ ତା ୨୪-୧୨-୪୭ ଦିନ ନୟାଗଡ଼ ରାଜ୍ୟର ମନ୍ତ୍ରୀମଣ୍ଡଳକୁ ବରଖାସ୍ତ କରିଦେଲେ । ଛାତ୍ରନେତା ଅକ୍ରୁର ମହାପାତ୍ର ଓ ରଘୁନାଥ ମହାପାତ୍ର ପ୍ରମୁଖ ରାଜାଙ୍କ କର୍ତ୍ତବ୍ୟ ତାଙ୍କୁ ବୁଝାଇଦେବାରୁ ରାଜା ସେହିଦିନ ରାତିରେ ତାଙ୍କର ପୂର୍ବାଦେଶ ପ୍ରତ୍ୟାହାର କଲେ । ମିଶ୍ରଣ ଚୁକ୍ତି ସମ୍ପାଦନା ପରେ ପ୍ରଜାମଣ୍ଡଳ ପ୍ରତିନିଧିମାନେ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେବାପାଇଁ ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ପରାମର୍ଶ ଲୋଡ଼ିବାରୁ ଜାନୁୟାରୀ ପହିଲା ପର୍ଯ୍ୟନ୍ତ ଯେ କୌଣସିମତେ କ୍ଷମତାରେ ରହିବାକୁ ମହତାବ ସେମାନଙ୍କୁ ଜଣାଇଦେଲେ । ତାଙ୍କ ପରାମର୍ଶକ୍ରମେ ତା ୩୧-୧୨-୪୭ ଅପରାହ୍ନ ୬ ଘଣ୍ଟା ସମୟରେ ସମସ୍ତ କାର୍ଯ୍ୟ ସମ୍ପାଦନ କରି ପ୍ରଜାମଣ୍ଡଳ ପକ୍ଷର ମନ୍ତ୍ରୀଦ୍ୱୟ ତାଙ୍କର ଇସ୍ତଫା ଦାଖଲ କଲେ ।

ପୂର୍ବ ଚୁକ୍ତିମତେ ଓଡ଼ିଶା ପ୍ରାଦେଶିକ ସରକାର ତା ୧-୧-୪୮ ଦିନ ନୟାଗଡ଼ ଶାସନ ଦାୟିତ୍ୱ ଗ୍ରହଣ କରିବା ପାଇଁ ଜଣେ ଶାସକ ପଠାଇଲେ । ସେହିଦିନ ନୟାଗଡ଼ର ରାଜା ଓଡ଼ିଶା ସରକାରଙ୍କ ଦ୍ୱାରା ନିଯୁକ୍ତ ଶାସକଙ୍କ ହାତରେ ଶାସନ କ୍ଷମତା ଅର୍ପଣ କରିଥିଲେ । ଏହିଦିନଟି ଓଡ଼ିଆ ଜାତିପକ୍ଷେ ଯେଭଳି ଅବିସ୍ମରଣୀୟ ନୟାଗଡ଼ବାସୀଙ୍କ ପକ୍ଷେ ସେହିଭଳି ଚିର ସ୍ମରଣୀୟ ହୋଇ ରହିଲା । ପ୍ରାୟ ୭୦୦ ବର୍ଷ ହେଲା ନୟାଗଡ଼ରେ ପ୍ରତିଷ୍ଠିତ ସାମନ୍ତବାଦୀ ଶାସନ ଜନସାଧାରଣଙ୍କ ହିତସାଧନ କରିନପାରିବାରୁ ଜନତାର ଫୁତ୍କାରରେ ଲୀନ ହୋଇଗଲା ଏବଂ ନୟାଗଡ଼ ଏକ ଗଣତନ୍ତ୍ର ରାଜ୍ୟର ଅଂଶବିଶେଷରେ ପରିଣତ ହେଲା । ମହାନ ନେତା ପଣ୍ଡିତ ଗୋପବନ୍ଧୁ ଦାଶ ଏବଂ ଉତ୍କଳ ଗୌରବ ମଧୁସୂଦନଙ୍କ ବୃହତ୍ତର ଉତ୍କଳ ଗଠନର କଳ୍ପନା ବହୁପରିମାଣରେ ପୂର୍ଣ୍ଣ ହେଲା ।

ନୟାଗଡ଼ ପ୍ରଜାମଣ୍ଡଳର ଇପ୍‌ସିତ ଆଶା 'ଗଡ଼ଜାତଗୁଡ଼ିକର ଓଡ଼ିଶା ପ୍ରଦେଶ ସହିତ ସମିଶ୍ରଣ' ସଫଳିକୃତ ହେବାରୁ ୧୯୪୮ ମସିହା ଜାନୁୟାରୀ ପହିଲାଦିନ ନୟାଗଡ଼ ରାଜ୍ୟର ୨୧ ହଜାର ସ୍ୱେଚ୍ଛାସେବକ, ୬ ଶହ ଗ୍ରାମର ପଞ୍ଚାୟତ ସଭ୍ୟବୃନ୍ଦ, ପ୍ରଜାମଣ୍ଡଳ କର୍ମୀମାନଙ୍କର ଏକ ବିରାଟ ସମାବେଶ ନୟାଗଡ଼ଠାରେ ଅନୁଷ୍ଠିତ ହେଲା । ଓଡ଼ିଶା ମନ୍ତ୍ରୀ ପରିଷଦର ପୂର୍ତ୍ତମନ୍ତ୍ରୀ ରାଜକୃଷ୍ଣ

ବୋଷ ଓ ପୁରୀ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଲୋକନାଥ ମିଶ୍ର ଏହି ସମାବେଶରେ ଉଦ୍‌ବୋଧନ ଦେଇଥିଲେ । ପ୍ରଜାମଣ୍ଡଳର ସଭାପତି ଶ୍ରୀ ଲକ୍ଷ୍ମଣ ମହାରଣା ପ୍ରସ୍ତାବ ଆଗତ କରି କହିଲେ, 'ପଣ୍ଡିତ ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ ଗଠିତ ଭାରତ ସରକାର, ସମୟର ସୁବିଧା ନେଇ ଓଡ଼ିଶା ଗଡ଼ଜାତର ରାଜାମାନଙ୍କଠାରୁ ସାର୍ବଭୌମ କ୍ଷମତା ଛଡ଼ାଇନେଇ ନୟାଗଡ଼ ଲୋକଙ୍କୁ ଉକ୍ତ କ୍ଷମତା ଦେବା ସଙ୍ଗେ ସଙ୍ଗେ ନୟାଗଡ଼ ରାଜ୍ୟର ଶାସନ କ୍ଷମତା ଓଡ଼ିଶା ପ୍ରଦେଶର ଲୋକତାନ୍ତ୍ରିକ ସରକାର ହାତରେ ଅର୍ପଣ କରି ବୃହତ୍ତର ଉତ୍କଳ ଗଠନର ପରିକଳ୍ପନାକୁ ସାଫଲ୍ୟମଣ୍ଡିତ କରିଥିବାରୁ ପଣ୍ଡିତ ନେହେରୁଙ୍କୁ ତଥା ଭାରତର ଜାତୀୟ ସରକାରଙ୍କୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ଏହି ମହାନ ବିପ୍ଲବରେ ନୟାଗଡ଼ ଜନସାଧାରଣ ତଥା ଓଡ଼ିଶା ଗଡ଼ଜାତର ଜନସାଧାରଣ ଯେଉଁ ତ୍ୟାଗପୂତ ସାଧନା କରିଛନ୍ତି ସେଥିପାଇଁ ସେମାନଙ୍କୁ ମଧ୍ୟ ସ୍ୱାଗତ ଅଭିନନ୍ଦନ ଜଣାଇଅଛନ୍ତି । ଭାରତର ନେତା ତଥା ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଓଡ଼ିଶାର ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବ, ଅଞ୍ଚଳ କାଉନ୍‌ସିଲର ସଭାପତି ସାରଙ୍ଗଧର ଦାସ ପ୍ରମୁଖ ମହାନ ନେତୃବୃନ୍ଦ ଉକ୍ତ କାର୍ଯ୍ୟ ସାଧନ କରିବା ପାଇଁ ଜୀବନକୁ ସଂକଟାପନ୍ନ କରି ଯେଭଳି ସହାୟତା କରିଛନ୍ତି, ସେଥିପାଇଁ ଉକ୍ତ ସଭା ସେମାନଙ୍କ ପ୍ରତି ଗଭୀର କୃତଜ୍ଞତା ଜ୍ଞାପନ କରୁଛନ୍ତି ଓ ଓଡ଼ିଶା ସହିତ ନୟାଗଡ଼ ମିଶ୍ରଣକୁ ପୂର୍ଣ୍ଣପ୍ରାଣରେ ଅନୁମୋଦନ କରୁଅଛନ୍ତି ।' ଉକ୍ତ ପ୍ରସ୍ତାବକୁ ଶ୍ରୀ ଶ୍ରୀଧର ଦାଶ ସମର୍ଥନ କରି ଭାଷଣ ଦେବାପରେ ଏହି ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଗଲା ।

ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକପରିଷଦ ପ୍ରଜାମଣ୍ଡଳମାନଙ୍କର ଭବିଷ୍ୟତ ସ୍ଥିତି ନିର୍ଦ୍ଧାରଣ ନକଲା ପର୍ଯ୍ୟନ୍ତ ନୟାଗଡ଼ ପ୍ରଜାମଣ୍ଡଳ ପୂର୍ବମତେ କାର୍ଯ୍ୟ କରିବାପାଇଁ ସ୍ଥିର କଲେ । କିନ୍ତୁ ପରିବର୍ତ୍ତିତ ପରିସ୍ଥିତିରେ ଗ୍ରାମପଞ୍ଚାୟତ ଓ ସ୍ୱେଚ୍ଛାସେବକବାହିନୀର କାର୍ଯ୍ୟ କିପରି ପରିଚାଳିତ ହେବ ଏହା ପ୍ରଜାମଣ୍ଡଳ ପକ୍ଷେ ଏକ ଚିନ୍ତାର ବିଷୟ ହୋଇଗଲା ସତ୍ୟ, ମାତ୍ର ଏହାକୁ କିଛିଦିନ ପାଇଁ ପୂର୍ବଭଳି ଚାଲୁ ରଖାଯିବାର ସ୍ଥିର ହେଲା । ତା ୩୦-୧-୪୮ ଦିନ ଜାତିର ପିତା ମହାତ୍ମାଗାନ୍ଧୀ ଆତତାୟୀର ଗୁଳି ମୃେଟରେ ପ୍ରାଣ ହରାଇଲେ । ଅଗ୍ନିକ ଭାବେ

ଏଭଳି ଏକ ଦାରୁଣ ବିପତ୍ତି ଦେଶପକ୍ଷେ ଅତ୍ୟନ୍ତ କ୍ଷତିକାରକ ହେଲା । ଏଥିପାଇଁ ନୟାଗଡ଼ରେ ଘୋର୍ ବିଷାଦର ଛାୟା ଖେଳିଯାଇଥିଲା ।

ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଓଡ଼ିଶା ଗଡ଼ଜାତ ପ୍ରଜାମଣ୍ଡଳମାନଙ୍କର ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ତା ୯-୧-୪୮ ଦିନ କଟକରେ ଭେଟିବାକୁ ନିମନ୍ତ୍ରଣ କରି ଗଡ଼ଜାତଗୁଡ଼ିକର ଭବିଷ୍ୟତ ଶାସନ ସମ୍ପର୍କରେ ଆଲୋଚନା କରିଥିଲେ । ଆଲୋଚନା ଶେଷରେ ଶାସନ କାର୍ଯ୍ୟରେ ସହାୟତା କରିବା ପାଇଁ ପ୍ରତି ରାଜ୍ୟରେ ଗୋଟିଏ ଲେଖାଏଁ ପରାମର୍ଶଦାତା ସଭା ରହିବ ଓ ସମସ୍ତ ଗଡ଼ଜାତମାନଙ୍କ ପାଇଁ ବର୍ତ୍ତମାନ ଗୋଟିଏ ଓଡ଼ିଶା ଷ୍ଟେଟ୍ ଆସେମ୍ବ୍ଲି ଗଠନ କରାଯିବ । ପ୍ରୋକ୍ତ ଷ୍ଟେଟ୍ ଆସେମ୍ବ୍ଲିକୁ ନୟାଗଡ଼ ପ୍ରଜାମଣ୍ଡଳର ପରାମର୍ଶକ୍ରମେ ଓଡ଼ିଶା ସରକାର ନୟାଗଡ଼ ତରଫରୁ ଶ୍ରୀଧର ଦାଶଙ୍କୁ ଷ୍ଟେଟ୍ ଆସେମ୍ବ୍ଲିର ସଭ୍ୟଭାବେ ମନୋନୀତ କଲେ ଏବଂ ୯ ଜଣ ପ୍ରଜାମଣ୍ଡଳ କର୍ମୀଙ୍କୁ ନେଇ ନୟାଗଡ଼ ପାଇଁ ଆଡ୍‌ଭାଇଜରି କମିଟି ଗଠନ କଲେ ।

ଅଖିଳ ଭାରତ ଦେଶୀୟ ରାଜ୍ୟ ଲୋକପରିଷଦଙ୍କ ପ୍ରସ୍ତାବମତେ ଗଡ଼ଜାତଗୁଡ଼ିକ ନିକଟବର୍ତ୍ତୀ ପ୍ରଦେଶ ସହିତ ମିଶିଯାଇଥିବାରୁ ସଂପୃକ୍ତ ରାଜ୍ୟର ପ୍ରଜାମଣ୍ଡଳଗୁଡ଼ିକ ନିଖିଳ ଭାରତ ଜାତୀୟ କଂଗ୍ରେସ ସହିତ ପ୍ରଜାପରିଷଦ ପ୍ରସ୍ତାବ ଗ୍ରହଣ କରି ପ୍ରଜାମଣ୍ଡଳଗୁଡ଼ିକ କଂଗ୍ରେସ ସହିତ ମିଶିଯିବା ପାଇଁ ଜଣାଇଦେବାରୁ ତା ୧୬-୫-୪୮ ଦିନ ନୟାଗଡ଼ ପ୍ରଜାମଣ୍ଡଳର ଅଧିବେଶନ ଓଡ଼ଗାଁଠାରେ ଅନୁଷ୍ଠିତ ହେଲା । ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବ ଅଧିବେଶନରେ ଯୋଗଦେଇ ଉଦ୍‌ବୋଧନ ଦେଇଥିଲେ । ଏହି ଅଧିବେଶନରେ ନୟାଗଡ଼ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ପ୍ରସ୍ତାବମତେ ପ୍ରଜାମଣ୍ଡଳ ସଭାପତି ଶ୍ରୀ ଲକ୍ଷ୍ମଣ ମହାରଣା ଏକ ପ୍ରସ୍ତାବ ଆଗତ କରିଥିଲେ । ତାହାହେଲା - ନିଖିଳ ଭାରତ ଦେଶୀୟ ରାଜ୍ୟ ପ୍ରଜାପରିଷଦଙ୍କ ନିର୍ଦ୍ଦେଶକ୍ରମେ ନୟାଗଡ଼ ପ୍ରଜାମଣ୍ଡଳ ପ୍ରସ୍ତାବ କରନ୍ତି କି ନୟାଗଡ଼ରୁ ତଥା ଗଡ଼ଜାତମାନଙ୍କରୁ ରାଜାରାଜୁଡ଼ା ଶାସନ ଲୁପ୍ତହେବା ପରେ ଗଡ଼ଜାତଗୁଡ଼ିକ ଭାରତବର୍ଷର ଅଙ୍ଗ ହୋଇଯାଇଅଛି । ଏହି ପରିସ୍ଥିତିରେ ନୟାଗଡ଼ରେ ପ୍ରଜାମଣ୍ଡଳର ସ୍ୱତନ୍ତ୍ର ଅସ୍ତିତ୍ୱର ଆବଶ୍ୟକତା ବର୍ତ୍ତମାନ ଉପଲବ୍ଧି କରାଯାଉନାହିଁ । ଏଣୁ ନୟାଗଡ଼ ପ୍ରଜାମଣ୍ଡଳ ନିଖିଳ ଭାରତ ଜାତୀୟ

କଂଗ୍ରେସ ସହିତ ସାମିଲ ହୋଇଯାଉ । ଏହି ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେବାପରେ ଆବଶ୍ୟକ ବ୍ୟବସ୍ଥା ଅବଲମ୍ବନ କରିବା ପାଇଁ ନିଖିଳ ଭାରତ ଜାତୀୟ କଂଗ୍ରେସ ସଭାପତିଙ୍କ ନିକଟକୁ ମଞ୍ଜୁରୀ ପାଇଁ ପଠାଇ ଦିଆଯାଇଥିଲା । ୨ୟ ପ୍ରସ୍ତାବ ପ୍ରଜାମଣ୍ଡଳ ଅନୁଷ୍ଠାନ କଂଗ୍ରେସ ସହିତ ସାମିଲ ହେବା ପୂର୍ବରୁ ପ୍ରଜାମଣ୍ଡଳର ସମସ୍ତ କାର୍ଯ୍ୟ ଶେଷ କରିଦେବା ପାଇଁ କାର୍ଯ୍ୟକାରୀ କମିଟିକୁ ଅଧିବେଶନ ପୂର୍ଣ୍ଣ କ୍ଷମତା ଦେଇଥିଲେ । ୩ୟ ପ୍ରସ୍ତାବରେ ପ୍ରଜାମଣ୍ଡଳର ସମସ୍ତ ଅଧସ୍ତନ କମିଟି, ନିର୍ବାଚିତ ପ୍ରତିନିଧି ଓ କର୍ମୀମାନେ ଆଜିଠାରୁ ଭାରତ ଜାତୀୟ କଂଗ୍ରେସର ନିର୍ଦ୍ଦେଶମତେ ପରିଚାଳିତ ହେବାପାଇଁ ପ୍ରସ୍ତାବ ଗ୍ରହଣ କଲେ ଏବଂ ପରିବର୍ତ୍ତିତ ପରିସ୍ଥିତି ଦୃଷ୍ଟିରୁ ପ୍ରଜାମଣ୍ଡଳ ଦ୍ୱାରା ଗଠିତ ସମାନ୍ତରାଳ ସରକାର ବା ଗ୍ରାମପଞ୍ଚାୟତ ଓ ଯୁବ ସ୍ୱେଚ୍ଛାସେବକବାହିନୀର କାର୍ଯ୍ୟକୁ ଭୂରି ଭୂରି ପ୍ରଶଂସା କରି ଉକ୍ତ କାର୍ଯ୍ୟକ୍ରମ ବନ୍ଦ କରିବା ପାଇଁ ପ୍ରସ୍ତାବ ଗ୍ରହଣ କଲେ । ପ୍ରଜାମଣ୍ଡଳ ଦୀର୍ଘ ୧୧ ବର୍ଷ କାଳ ନିରବଚ୍ଛିନ୍ନ ସଂଗ୍ରାମ କରି ନୟାଗଡ଼ରୁ ସାମନ୍ତସାହୀ ଶାସନ ଲୋପକରି ଗଣତନ୍ତ୍ର ଶାସନର ସୁଯୋଗ ଲୋକଙ୍କୁ ଦେଇ ସବୁଦିନ ପାଇଁ ଭାରତ ଜାତୀୟ କଂଗ୍ରେସ ପରି ମହାନ ଅନୁଷ୍ଠାନରେ ନିଜକୁ ସାମିଲ କରିଦେଲେ ।





ଧର୍ମପତ୍ନୀ ରାଧାଦେବୀଙ୍କ ସହ ଶ୍ରୀ ବେହେରା



ଆଦର୍ଶ ଚାଷୀ ନାରାୟଣ ବେହେରା



ସାନଭାଇ ରାମଚନ୍ଦ୍ରଙ୍କ ସହ ଶ୍ରୀ ବେହେରା



ମା' ଚନ୍ଦ୍ରାବତୀଙ୍କ (ମଝି) ଧର୍ମପତ୍ନୀ, ଭାଇବୋହୂ-ତିଳୋତ୍ତମା, ପୁଅ ଭାଗବତ, ସାନଭାଇ ରାମଚନ୍ଦ୍ର ପୁତୁରା ବିଜୟ ସହ(ବାମରୁ ପ୍ରଥମ)







ରାଜ୍ୟସରକାର ଓ କେନ୍ଦ୍ରସରକାରଙ୍କ ଦ୍ୱାରା ପ୍ରଦତ୍ତ
ସ୍ୱାଧୀନତା ସଂଗ୍ରାମୀ ତାମ୍ର ଫଳକ

କୃଷୀ ପରିଚୟ ପତ୍ର

3077

ପରିଚୟ ପତ୍ର ନଂ 1145

ନାମ- ଶ୍ରୀ ନାରାୟଣ ବେହେରା

ଆଦର୍ଶ ଚାଷୀ ପରିଚୟପତ୍ର



ବଡପୁଅ ୰ ଭାଗବତ ଓ ବୋହୂ ମନ୍ଦାକିନୀ



ସାନଭାଇ ରାମଚନ୍ଦ୍ର ଓ ଭାଇବୋହୂ ମାୟାଦେବୀ



ମଝିଆ ଭାଇ ୰ କୃଷ୍ଣଚନ୍ଦ୍ର, ପତ୍ନୀ-ତିଳୋତ୍ତମା, ପୁଅ-ବିଜୟ, ବୋହୂ ସୁବର୍ଣ୍ଣୀ ଓ ନାତୁଣୀ ମାନସୀ



ଧର୍ମପତ୍ନୀ ରାଧାଦେବୀ, ନାତୁଣୀ ସୋନୀ, ରୋନୀ, ମାମନ, ଅଣନାତୁଣୀ - ଚେରିଲୀ, ଅଣନାତି - ବାବଲଙ୍କ ସହ ଏକ ବିଶେଷ ମୁହୂର୍ତ୍ତରେ ଶ୍ରୀ ବେହେରା



ପୁଅ ସରୋଜ, ପୁତ୍ରବଧୂ ପ୍ରଭାତୀ



ନାତି ସତ୍ୟକାମ୍ (ଟିକୁ), ସତ୍ୟଜିତ୍ (ମୁନା)
ଜେଜେବାପା ଓ ଜେଜେମା'ଙ୍କ ଗହଣରେ



ମଝିଆ ବୋହୂ ପ୍ରଭାତୀ ସହ ଶ୍ରୀମତୀ ଓ ଶ୍ରୀ ବେହେରା



ମା' ଓ ବାପାଙ୍କ ସହ ଦ୍ୱିତୀୟ ପୁଅ ସରୋଜ



ବୋହୂ ପ୍ରଭାତୀ, ସାନ ମଝିଆ ଝିଅ ନଳିନୀଙ୍କ ସହ ଶ୍ରୀମତୀ ବେହେରା



ବଡ଼ ଝିଅ ମଞ୍ଜୁ, ଜ୍ୱାଇଁ ରାଧାମୋହନ, ନାତି ଜୁଲୁ ଓ ସିଲୁ



ପୁଅ ଚିତ୍ତରଂଜନ ସହ ବୋହୂ ✓ ନମିତା



ସାନପୁଅ ବିଭୂତି, ବୋହୂ ମିତା ଓ ନାତୁଣୀ



ଝିଅ ରେଣୁଙ୍କ ସହ କ୍ୱାଇଁ ଜୟକୃଷ୍ଣ



ପୁଅ ସରୋଜ ଓ କ୍ୱାଇଁ ମଦନମୋହନ ସହ ସାନଭାଇ ରାମଚନ୍ଦ୍ର



ପୁଅ ଚିତ୍ତର ବିଭାହ ଉତ୍ସବରେ



ପୁଅ ଚିତ୍ତରଂଜନ, ଦୁଇ ନାତି ସୋନୁ ଓ ଚିନୁ



ଏକ ବିଶେଷ ମୁହୂର୍ତ୍ତରେ ଯୁବକ ସମୟର ସ୍ମୃତି ଚାରଣ



ପୁଅ - ଛାତ୍ର ଓ ଶ୍ରମିକନେତା ଭାଗବତ ଇସ୍ରାଏଲ୍ ଗ୍ରସ୍ତର ଏକ ମୁହୂର୍ତ୍ତ



ନାତି ପିକୁ (ଚନ୍ଦନ) ସହିତ



ବଡ଼ ନାତି ଟିକୁ (ସତ୍ୟକାମ) ସହିତ




ଡଃ ପ୍ରମୋଦ କୁମାର ଆଚାର୍ଯ୍ୟଙ୍କୁ ବୃ□ଙ୍କ ସମ୍ମାନ ମନ୍ତ୍ରୀ ଶ୍ରୀମତୀ ସୁରମା ପାଢ଼ୀ ପ୍ରଦାନ ଅବସରରେ ।



ଶ୍ରୀ ବେହେରାଙ୍କ "ମୋ ସଂଗ୍ରାମୀ ଜୀବନ" ପୁସ୍ତକ ଉନ୍ମୋଚନ ଅବସରରେ ପୂର୍ବତନ କେନ୍ଦ୍ରମନ୍ତ୍ରୀ ଶ୍ରୀ ବ୍ରଜ କିଶୋର ତ୍ରିପାଠୀ ଓ ଭାଗବତ ବେହେରା ସ୍ମୃତି ସଂସଦର ସଭାପତି ଶ୍ରୀ ବିଦ୍ୟାଧର ବାରିକ




ଜୟଦେବ ଭବନ ଠାରେ "ମୋ ସଂଗ୍ରାମୀ ଜୀବନ" ପୁସ୍ତକ ଉନ୍ମୋଚନ ଅବସରରେ ପ୍ରାରମ୍ଭିକ ଉଦ୍‌ବୋଧନ



ଜୟଦେବ ଭବନ ଠାରେ "ମୋ ସଂଗ୍ରାମୀ ଜୀବନ" ପୁସ୍ତକ ଉନ୍ମୋଚନ ଅବସରରେ (ବାମରୁ) ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ଡଃ ସେବା ମହାପାତ୍ର, ଶ୍ରୀ ତ୍ରିପାଠୀ ଓ ଶ୍ରୀ ବାରିକ



ଜୟଦେବ ଭବନ ଠାରେ "ମୋ ସଂଗ୍ରାମୀ ଜୀବନ" ପୁସ୍ତକ ଉନ୍ମୋଚନ ଅବସରରେ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ କୁମାର ସାମଲ (ସୂଚନା ଓ ଲୋକ ସଂପର୍କ), ବିଧାୟକ ଅରୁଣ ସାହୁ (ଉପ ମୁଖ୍ୟ ସଚେତକ)



ଜୟଦେବ ଭବନ ଠାରେ "ମୋ ସଂଗ୍ରାମୀ ଜୀବନ" ପୁସ୍ତକ ଉନ୍ମୋଚନ ଅବସରରେ କୃତି ଛାତ୍ରୀ ପୂଜା ମହାନ୍ତିଙ୍କୁ ସମ୍ମାନିତ



## ପ୍ରକାଶକଙ୍କ କୃତଜ୍ଞତା

ମୋ ବାପାଙ୍କର ଟିପାଖାତା ଓ ଡାଏରୀରେ ଥିବା 'ସଂଗ୍ରାମୀ ଜୀବନ'ର କେତେକ କାହାଣୀ ଆଜି ଲୋକଲୋଚନକୁ 'ବହି' ଆକାରରେ ଆସିଥିବାରୁ ମୋ ବାପା ଏବଂ ଆମ ପରିବାର ବହୁତ ଖୁସି । ଏ ଖୁସି ଦେଖିବା ପାଇଁ ମୋର ଜ୍ୟେଷ୍ଠଭ୍ରାତା ଜନନେତା ଭାଗବତ ବେହେରା ଆଜି ନାହାନ୍ତି ! ତାଙ୍କ ପାଇଁ ମୁଁ ଓ ମୋର ପରିବାର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ବିକ୍ଷିପ୍ତ ଲେଖାକୁ ଏକତ୍ର କରି ଏହାକୁ ବହି ଆକାରରେ ରୂପ ଦେଇଥିବା ମୋର ଜ୍ୟେଷ୍ଠଭ୍ରାତୃତୁଲ୍ୟ ଓଡ଼ିଶାର ବିଶିଷ୍ଟ ସମାଜବାଦୀ - ଶ୍ରମିକ ନେତା ଶ୍ରୀଯୁକ୍ତ ବିଦ୍ୟାଧର ବାରିକ୍ ଏବଂ ଉତ୍କଳ ଯାଦବ ମହାସଭାର ମହାସଚିବ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ଦାସଙ୍କ ନିକଟରେ ମୁଁ ଏବଂ ମୋ ପରିବାର ଚିର ଋଣୀ ।

ଏହି ବହିର ଅଙ୍ଗସଜ୍ଜା ଓ ପୂର୍ଣ୍ଣାଙ୍ଗ ରୂପରେଖ ପାଇଁ ସହଯୋଗ କରିଥିବା ବି.ଏନ୍. ଗ୍ରାଫିକ୍ସ ଭୁବନେଶ୍ୱରଙ୍କ ନିକଟରେ ଆମେ ଗଭୀର କୃତଜ୍ଞ ।

ଭୁବନେଶ୍ୱର

ତା ୨୬-୧-୨୦୦୯ ସରୋଜ କୁମାର ବେହେରା





Design & Printed at : Shradhanjali, BBSR